ଅବିସ୍ମରଣୀୟ ସଂସ୍କାରକ

# ଜୟମଙ୍ଗଳ ରଥ



କୈଳାସ ଚନ୍ଦ୍ର ଦାଶ

# ଲେଖକ ପରିଚୟ

ଡ଼କ୍ଟର କୈଳାସ ଚନ୍ଦ୍ର ଦାଶ ( ଜନ୍ମକାଳ ଅଗଷ୍ଟ ୫, ୧୯୫୪ )



ଓଡ଼ିଶାର ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଇତିହାସ ଅଧ୍ୟାପକ ଭାବେ କାର୍ଯ୍ୟ କରିଛନ୍ତି । ଓଡ଼ିଶା ଇତିହାସ, ସାହିତ୍ୟ ଓ ସମାଜ ସଂସ୍କୃତି ସଂପର୍କିତ ତାଙ୍କର ବହୁ ପ୍ରବନ୍ଧ ଦେଶ ଓ ବିଦେଶରେ ପତ୍ରପତ୍ରିକା ମାନଙ୍କରେ ପ୍ରକାଶ ପାଇଛି । ସେ ଗଙ୍ଗ ନରପତି ଚୋଡ଼ଗଙ୍ଗ ଦେବଙ୍କ ସଂପର୍କରେ ଗବେଷଣା କରି ୧୯୮୭ ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି ଉପାଧି ଲାଭ କରିଛନ୍ତି । ବର୍ତ୍ତମାନ ବ୍ରହ୍ମପୁର ବିନାୟକ ଆଚାର୍ଯ୍ୟ ମହାବିଦ୍ୟାଳୟର ଇତିହାସ ପ୍ରାଧ୍ୟାପକ ରୂପେ କାର୍ଯ୍ୟ କରୁଛନ୍ତି ।

## ପ୍ରକାଶିତ ପୁସ୍ତକ

୧. Legend, History and Culture of India, Calcutta, 1997
୨. ଆଞ୍ଚଳିକ ଜନଶ୍ରୁତି ଓ ଇତିହାସ, ଭୁବନେଶ୍ୱର, ୨୦୦୦
୩. ନବ ଜାଗୃତିର ଅନନ୍ୟ ସାରଥି, କୃପାସିନ୍ଧୁ ନରେନ୍ଦ୍ର ଦେବ, ବ୍ରହ୍ମପୁର ୨୦୦୩
୪ ଓଡ଼ିଶା ବାହାରେ ଓଡ଼ିଆ ଜାଗୃତି, ଭୁବନେଶ୍ୱର, ୨୦୦୩
୫. ସିଂହଭୂମିର ଓଡ଼ିଆ ନେତା : ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ (ପ୍ରକାଶ ଅପେକ୍ଷାରେ), ଜ୍ଞାନଯୁଗ ପବ୍ଲିକେଶନ୍, ଭୁବନେଶ୍ୱର

অবিস্মরণীয় সংস্কারক

# ଜୟମଙ୍ଗଳ ରଥ

କୈଳାସ ଚନ୍ଦ୍ର ଦାଶ
ଇତିହାସ ପ୍ରାଧ୍ୟାପକ
ବିନାୟକ ଆଚାର୍ଯ୍ୟ କଲେଜ, ବ୍ରହ୍ମପୁର

ନବୀନ ପ୍ରକାଶନ
ବ୍ରହ୍ମପୁର - ୧୦

ଅବିସ୍ମରଣୀୟ ସଂସ୍କାରକ

# ଜୟମଙ୍ଗଳ ରଥ

ଲେଖକ :
କୈଳାସ ଚନ୍ଦ୍ର ଦାଶ

ପ୍ରକାଶକ :
ରବି ରଥ
ନବୀନ ପ୍ରକାଶନ, ବ୍ରହ୍ମପୁର-୧୦



ପ୍ରଥମ ପ୍ରକାଶନ : ୨୦୦୫
ମୁଦ୍ରଣ : ତ୍ରିମୂର୍ତ୍ତି ଗ୍ରାଫିକ୍ସ
ମୂଲ୍ୟ : ଟ.୨୫-୦୦ ଙ୍କା

Abismaraniya Sanskaraka

**Jayamangala Rath**

Writer :
**Kailash Chandra Dash**

Publisher :
**Rabi Rath**
Nabeen Publications, Berhampur - 10



First Edition : 2005 A.D.

Printed at :Trimurty Graphics

Price : Rs. 25-00

# ଉତ୍ସର୍ଗ

ବ୍ରିଟିଶ ଶାସନ କାଳରେ ବଙ୍ଗବିହାର ଓଡ଼ିଶାରେ ବହୁବାର କାରାବରଣ କରି ଗାନ୍ଧିବାଦୀ ଚିନ୍ତାଧାରାକୁ ନିଜ ଅଞ୍ଚଳ ତିର୍ତ୍ତୋଲ (ଜଗତ୍‌ସିଂହପୁର)ରେ ପ୍ରସାରିତ କରିଥିବା କଂଗ୍ରେସ କର୍ମୀ ମୋର ପିତା ସ୍ୱର୍ଗତଃ ଆନନ୍ଦ ଚନ୍ଦ୍ର ଦାଶଙ୍କ ସ୍ମୃତିରେ ଏହି ପୁସ୍ତକଟି ସମର୍ପିତ।

# ମୁଖଶାଳା

ଓଡ଼ିଶାର ସାମାଜିକ ଇତିହାସ ରଚନା ଏପର୍ଯ୍ୟନ୍ତ ବୈଜ୍ଞାନିକ ରୀତିରେ ହୋଇପାରି ନାହିଁ। ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଶାର ସମାଜ ସମ୍ପର୍କରେ ଲେଖିବାବେଳେ ତଥ୍ୟର ଅଭାବ ପରିଲକ୍ଷିତ ହୋଇଥାଏ। କିନ୍ତୁ ବ୍ରିଟିଶ ରାଜତ୍ୱ ଠାରୁ ଓଡ଼ିଶା ସ୍ୱାଧିନତା ଲାଭ ପର୍ଯ୍ୟନ୍ତ ଦୀର୍ଘ ୧୪୪ ବର୍ଷ ମଧ୍ୟରେ ଓଡ଼ିଶାର ସମାଜରେ ଯେଉଁ ପରିବର୍ତ୍ତନ, ପ୍ରତିବାଦ ଏବଂ ପୁନର୍ଗଠନ ପାଇଁ ସଂସ୍କାରମୂଳକ ପଦକ୍ଷେପ ନିଆଯାଇଥିଲା ସେ ସମ୍ପର୍କରେ ବହୁ ନିର୍ଭରଯୋଗ୍ୟ ଉପାଦାନ ରହିଛି। ଏହି ସାମାଜିକ ଇତିହାସ ଚର୍ଚ୍ଚାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ସମାଜ ସଂସ୍କାରକମାନଙ୍କ ଜୀବନ ଚର୍ଚ୍ଚା। ଔପନିବେଶିକ ଶାସନ ପର୍ଯ୍ୟାୟରେ ଓଡ଼ିଶାରେ ସମାଜ ସଂସ୍କାର ପାଇଁ ବହୁମୁଖୀ ଉଦ୍ୟମ କରାଯାଇଥିଲା। ଏହି ପର୍ଯ୍ୟାୟରେ ଓଡ଼ିଶାରେ ଅନେକ ସଂସ୍କାରକ ଜନ୍ମ ଗ୍ରହଣ କରିଥିଲେ। ଯେଉଁମାନେ ସମାଜର କୁସଂସ୍କାର ବିରୁଦ୍ଧରେ ସ୍ୱର ଉଠାଇଥିଲେ, ପ୍ରତିବାଦ କରିଥିଲେ ନିଜ ଲେଖା ଓ ସଂଗଠନ ମାଧ୍ୟମରେ ଏବଂ ସମାଜର ପୁନର୍ଗଠନ ପାଇଁ ଦାବି କରିଥିଲେ, ସେହି ସଂସ୍କାରକ ଓ ସଂଗଠକମାନଙ୍କ ମଧ୍ୟରେ ଜୟମଙ୍ଗଳ ରଥ ଅନ୍ୟତମ। ତାଙ୍କ ଜୀବନର ଦୀର୍ଘ ୩୮ ବର୍ଷ ଓଡ଼ିଶାର ସାମାଜିକ ଇତିହାସର ଏକ ଅବିସ୍ମରଣୀୟ ଅଧ୍ୟାୟ। ଏହା ଥିଲା ସାମାଜିକ ଜାଗୃତିର ଏକ ବିଶିଷ୍ଟ ପର୍ଯ୍ୟାୟ।

ଓଡ଼ିଶା ରାଜ୍ୟ ଅଭିଲେଖାଗାର (ଭୁବନେଶ୍ୱର)ଠାରେ କେତେକ ପୁରାତନ ସମ୍ବାଦପତ୍ର ପଢ଼ିବାବେଳେ ସଂସ୍କାରକ ଜୟମଙ୍ଗଳ ରଥଙ୍କର ବୈଶିଷ୍ଟ୍ୟ ମୁଁ ଉପଲବ୍ଧି କଲି। ଜୟମଙ୍ଗଳ ଜଣେ ଉଗ୍ର ସମାଜ ସଂସ୍କାରକ

ଥିଲେ ମଧ୍ୟ ତାଙ୍କ ସମ୍ପର୍କରେ କୌଣସି ପୁସ୍ତକ ମୋ ଦୃଷ୍ଟିକୁ ଆସିନାହିଁ। ତାଙ୍କର କେତେକ ଲେଖା ଓ କାର୍ଯ୍ୟକ୍ରମ ସମ୍ବଲପୁର ହିତୈଷିଣୀ, ଉତ୍କଳଦୀପିକା, ଆଶା, ନବୀନ, ସତ୍ୟ ସମାଚାର, ଦେଶକଥା, ପୁରୀବାସୀ ପରି ସାପ୍ତାହିକ ସମ୍ବାଦପତ୍ରରେ ପ୍ରକାଶ ପାଇଥିବାରୁ ସେ ସବୁ ମାଧ୍ୟମରେ ତାଙ୍କ ସଂପର୍କରେ ଏକ ପୁସ୍ତକ ରଚନା କରିବାକୁ ପ୍ରଲୁବ୍ଧ ହେଲି। ନିକଟ ଅତୀତରେ କଥା ପ୍ରସଙ୍ଗରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଭାଷାତତ୍ତ୍ୱ ବିଭାଗର ପ୍ରଫେସର ଗଗନେନ୍ଦ୍ର ନାଥ ଦାଶ (ବର୍ତ୍ତମାନ ଅବସର ପ୍ରାପ୍ତ) ଏବଂ ବି.ଜେ.ବି. କଲେଜ (ଭୁବନେଶ୍ୱର)ର ରାଜନୀତି ବିଜ୍ଞାନର ପ୍ରାଧ୍ୟାପକ ବି. ରାମଚନ୍ଦ୍ର (ବର୍ତ୍ତମାନ ଅବସରପ୍ରାପ୍ତ) ମୋତେ ଜୟମଙ୍ଗଳଙ୍କର ଅସାଧାରଣ ସଂସ୍କାର କାର୍ଯ୍ୟକ୍ରମ ଥିବାର କଥା କହିଥିଲେ। ପରେ ବ୍ରହ୍ମପୁରର ବିନାୟକ ଆଚାର୍ଯ୍ୟ କଲେଜରେ ଚାକିରୀ କରିବା ପରେ ଦିନେ ଗେଟ୍‌ବଜାର ଛକରେ ଜୟମଙ୍ଗଳଙ୍କର ଛୋଟ ପ୍ରତିମୂର୍ତ୍ତି ଦେଖି ତାଙ୍କ ସମ୍ପର୍କରେ ପୁସ୍ତକଟିଏ ଲେଖିବା ପାଇଁ ପ୍ରେରଣା ପାଇଲି, ଜୟମଙ୍ଗଳଙ୍କୁ ବିସ୍ମୃତିରୁ ଉଦ୍ଧାର କରି ବର୍ତ୍ତମାନ ଓଡ଼ିଶାରେ ତାଙ୍କୁ ପରିଚିତ କରିବାପାଇଁ ମୋର ଏ ଉଦ୍ୟମ।

ଜୟମଙ୍ଗଳ ରଥ ଜଣେ ଅସାଧାରଣ ସଂସ୍କାରକ ଓ ସଂଗଠକ ହିସାବରେ ସୁପରିଚିତ। ତାଙ୍କର ପ୍ରଥମ ପତ୍ନୀଙ୍କର କନ୍ୟା ନବୀନ କୁସୁମ ରଥ (ମଂଜୁ) ବର୍ତ୍ତମାନ ବ୍ରହ୍ମପୁରର ଚନ୍ଦ୍ରମଣି ପେଣ୍ଠରେ ଅବସ୍ଥାନ କରିଛନ୍ତି। ସେ ମୋତେ ତାଙ୍କ ଆଦ୍ୟ ଜୀବନର ଗୋଟିଏ ଫଟୋ ଯୋଗାଇବା ସଙ୍ଗେ ସଙ୍ଗେ ଏପରି ପୁସ୍ତକ ରଚନା ହେବା ଆବଶ୍ୟକ ବୋଲି ପରାମର୍ଶ ଦେଇଥିଲେ। ସେ ମଧ୍ୟ ଜୟମଙ୍ଗଳଙ୍କ ସମ୍ପର୍କରେ କେତେକ ତଥ୍ୟ ମୋର ଦୃଷ୍ଟିକୁ ଆଣିଥିଲେ। ୧୯୪୨ ମସିହାରେ ତାଙ୍କର ପ୍ରଥମ ପତ୍ନୀ ମରିଯିବାପରେ ସେ ଦ୍ୱିତୀୟବାର ବିବାହ କରିଥିବାର କଥା ନବୀନ କୁସୁମ ସ୍ମରଣ କରିଥିଲେ। ତାଙ୍କର ଦ୍ୱିତୀୟା

ପତ୍ନୀ ଅବ୍ରାହ୍ମଣ ଥିଲେ । ତାଙ୍କ ନାମ ନୟମୀ ଜେନା (ଜାତିରେ କେଉଟ ଏବଂପରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ) । ପାରଳାଖେମୁଣ୍ଡିର ସେରଙ୍ଗ ଥିଲା ତାଙ୍କ ଜନ୍ମସ୍ଥାନ । ସେତେବେଳେ ଏପରି ବିବାହ ଜୟମଙ୍ଗଳଙ୍କର ସଂସ୍କାରକ ଜୀବନର ଏକ ନୂତନ ଦିଗ ଉନ୍ମୋଚିତ କରିଥିଲା । ତତ୍କାଳୀନ ସମାଜ ତାଙ୍କର ଏପରି ପଦକ୍ଷେପକୁ ଆନନ୍ଦର ସହିତ ଗ୍ରହଣ କରିନଥିଲା ବୋଲି ତାଙ୍କ କନ୍ୟା ନବୀନ କୁସୁମ ସୂଚନା ଦେଇଥିଲେ । ତାଙ୍କର ଅକୁଣ୍ଠ ସହଯୋଗ ନିମନ୍ତେ ମୁଁ ତାଙ୍କ ନିକଟରେ କୃତଜ୍ଞ । ଜୟମଙ୍ଗଳଙ୍କର ପୁତ୍ର ଶିବ ସୁନ୍ଦର ରଥ ପିତାଙ୍କ ସଂପାଦିତ ମହିମା ପତ୍ରିକା ପ୍ରକାଶ କରୁଛନ୍ତି ଏବଂ ପିତାଙ୍କର ଶ୍ରାଦ୍ଧଦିବସ ପାଳନ କରୁଛନ୍ତି । ତେବେ ଜୟମଙ୍ଗଳଙ୍କ ପାଇଁ ତାଙ୍କଠାରୁ ଅଧିକ କିଛି ଆଶା କରାଯିବା ଉଚିତ ବୋଲି ମୁଁ ମନେକରେ ।

ଏ ପୁସ୍ତକ ରଚନା କରିବାପାଇଁ ମୋତେ ବହୁ ବଂଧୁ ଅନୁରୋଧ କରିଥିଲେ । ସେମାନଙ୍କର ନାମ ଏଠାରେ ଉଲ୍ଲେଖ ନକରି ସେମାନଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରୁଛି । ପୁସ୍ତକଟି ପ୍ରକାଶ କରିବା ପାଇଁ ନବୀନ ସମ୍ବାଦପତ୍ରର ବର୍ତ୍ତମାନ ସଂପାଦକ ରବି ରଥ ମୋତେ ବହୁ ଅନୁରୋଧ କରିଥିଲେ । ସେ ମଧ୍ୟ ଏହାର ପ୍ରକାଶକ ହୋଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ । ପରିଶେଷରେ ଓଡ଼ିଶାରେ ଏହି ପୁସ୍ତକଟି ପଠିତ ଏବଂ ଆଦୃତ ହେଲେ ଲେଖକର ଶ୍ରମ ସାର୍ଥକ ହେବ ବୋଲି ଆଶା ।

କୈଳାସ ଚନ୍ଦ୍ର ଦାଶ

୨୪.୪.୨୦୦୫

||୧||

ସମାଜ ସଂସ୍କାରେ ଓଡ଼ିଶାରେ ମହାତ୍ମାଗାନ୍ଧିଙ୍କ ଗଠନାତ୍ମକ କାର୍ଯ୍ୟକ୍ରମରେ ପ୍ରମୁଖ ଭୂମିକା ଗ୍ରହଣ ଏବଂ ସ୍ୱାଧୀନତା ଆନ୍ଦୋଳନ ସଂପର୍କିତ କାର୍ଯ୍ୟରେ ଯୋଗଦାନ, ଓଡ଼ିଆ ଭାଷା, ସଂସ୍କୃତି ଓ ଜାତୀୟତାର ସୁରକ୍ଷା ଓ ଅଭିବୃଦ୍ଧିରେ ସହଯୋଗ ଦାନ ପରି ଅନେକ ଧାରାରେ ଅବଗାହନ କରି ସଂସ୍କାରକ ଓ ସଂଗଠକ ସ୍ୱର୍ଗତଃ ଜୟମଙ୍ଗଳ ରଥ ଓଡ଼ିଶା ଇତିହାସରେ ଏକ ଅବିସ୍ମରଣୀୟ ଚରିତ୍ର ହିସାବରେ ପରିଚିତ ହୋଇଛନ୍ତି । ତାଙ୍କ ଜୀବନର କାଳ ୧୮୯୩ ମସିହା ଶ୍ରୀପଞ୍ଚମୀଠାରୁ ୧୯୫୨ ମସିହା ରଥଯାତ୍ରା ପର୍ଯ୍ୟନ୍ତ । ଏହି ସମୟ ସୀମା ମଧ୍ୟରେ ୧୯୧୪ ଠାରୁ ୧୯୫୨ ପର୍ଯ୍ୟନ୍ତ ଦୀର୍ଘ ୩୮ ବର୍ଷ କର୍ମମୁଖର ଜୀବନ ଯାତ୍ରାରେ ଜୟମଙ୍ଗଳ ଉଗ୍ର ସଂସ୍କାରକର ପରିଚୟ ଦେଇଯାଇଛନ୍ତି । ଊନବିଂଶ ଶତକର ମଧ୍ୟଭାଗରୁ ବିଂଶ ଶତକର ପ୍ରଥମ ପଞ୍ଚ ଦଶନ୍ଧି ମଧ୍ୟରେ ଓଡ଼ିଶାର ସ୍ଥାଣୁ ସମାଜର ପରିବର୍ତ୍ତନ ଓ ପୁନର୍ଗଠନ ପାଇଁ ଉଦ୍ୟମ କରିଥିବା ଚରିତ୍ରମାନଙ୍କ ମଧ୍ୟରେ ପଣ୍ଡିତ ହରିହର ଦାସ, ଗୋବିନ୍ଦ ଚନ୍ଦ୍ର ମହାପାତ୍ର, ଚତୁର୍ଭୁଜ ପଟ୍ଟନାୟକ, ଗୌରୀଶଙ୍କର ରାୟ, ଲାଲା ଜଗମୋହନ, ବିଶ୍ୱନାଥ କର, ଶ୍ରୀବସ୍ତ ପଣ୍ଡା, ବୈରାଗୀ ମିଶ୍ର ଏବଂ ସରଳା ଦେବୀ ଅଗ୍ରଗଣ୍ୟ । ଏହି ଶ୍ରେଣୀର ସଂସ୍କାରକମାନଙ୍କ ମଧ୍ୟରେ ଜୟମଙ୍ଗଳ ରଥ ଅନ୍ୟତମ । ଦୁର୍ଭାଗ୍ୟର କଥା ତାଙ୍କ ବହୁମୁଖୀ ସଂସ୍କାର ପ୍ରୟାସୀ ଜୀବନର ପୂର୍ଣ୍ଣାଙ୍ଗ ଚିତ୍ର ଏ ପର୍ଯ୍ୟନ୍ତ ଓଡ଼ିଆ ପାଠକ ପାଠିକାମାନଙ୍କ ନିକଟରେ ପହଞ୍ଚିପାରିନାହିଁ ତାଙ୍କ ସଂପର୍କିତ ବହୁ ବିବରଣୀ ଅନ୍ଧାର ଅତୁଆ ମଧ୍ୟରେ ରହିଅଛି । ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ, ଆଶା, ନବୀନ, ଦେଶକଥା, ପୁରୀବାସୀ, ମହିମା, ସଂସ୍କାର, ସମାଜମିତ୍ର ପରି ସମ୍ବାଦପତ୍ର ଓ ସାହିତ୍ୟ ପତ୍ରମାନଙ୍କରେ ପ୍ରକାଶିତ ତାଙ୍କର ଲେଖା ଓ ବାର୍ତ୍ତାକୁ ଆଧାର କରି ତାଙ୍କ ଜୀବନର କେତୋଟି ଅବିସ୍ମରଣୀୟ ପ୍ରସଙ୍ଗକୁ

ଉପସ୍ଥାପନ କରାଯାଇପାରେ। ତାଙ୍କର ରଚନା ସମଗ୍ର ବୈପ୍ଳବିକ ଚେତନାଭରା, ଜୀର୍ଣ୍ଣ ସମାଜ ପରିବର୍ତ୍ତନ ପାଇଁ ଉଦ୍ଦୀଷ୍ଟ। ମଂଜୁଷା ପରି ଗଡ଼ଜାତ ରାଜ୍ୟରୁ ବାହାରି ସମଗ୍ର ଓଡ଼ିଶାର ବିଭିନ୍ନ ଗଠନାତ୍ମକ କାର୍ଯ୍ୟକ୍ରମରେ ସଂସ୍କାରକର ମନ ଦେଇ ବିଭିନ୍ନ ବିତର୍କ ମଧ୍ୟ ଦେଇ ସେ କାର୍ଯ୍ୟ କରିଛନ୍ତି। ଓଡ଼ିଶାର ଜାତୀୟବାଦୀ ଯୁଗର ଏପରି ଏକ ଅବିସ୍ମରଣୀୟ ସଂସ୍କାରକ ଭାରତ ସାମାଜିକ ଇତିହାସ ପୃଷ୍ଠାରେ ସ୍ଥାନ ପାଇବା ଏକାନ୍ତ ଆବଶ୍ୟକ। ତାଙ୍କ ଜୀବନର କାର୍ଯ୍ୟମାଳାକୁ ନିମ୍ନ ସମୟ ସୀମାରେ ପ୍ରକାଶ କରାଯାଇପାରେ;

୧. ୧୯୧୪ ଠାରୁ ୧୯୨୨ ପର୍ଯ୍ୟନ୍ତ ଛାତ୍ର ଏବଂ କର୍ମଜୀବନର ଆରମ୍ଭ କାଳ।

୨. ୧୯୨୩ ଠାରୁ ୧୯୩୦ ପର୍ଯ୍ୟନ୍ତ ଗାନ୍ଧୀବାଦୀ ଆଦର୍ଶ ଅନୁସରଣରେ ବିଭିନ୍ନ ସଂସ୍କାର ଓ ସଂଗଠନ କାର୍ଯ୍ୟ।

୩. ୧୯୩୦ ଠାରୁ ୧୯୪୦ ପର୍ଯ୍ୟନ୍ତ ବିଭିନ୍ନ ସଂଗଠନାତ୍ମକ କାର୍ଯ୍ୟ।

୪. ୧୯୪୦ ଠାରୁ ୧୯୫୨ ପର୍ଯ୍ୟନ୍ତ ସଂସ୍କାର ଓ ସଂଗଠନର ଶେଷ ପର୍ଯ୍ୟାୟ।

॥୨॥

ଜୟମଙ୍ଗଳ ରଥଙ୍କର ଜନ୍ମକାଳ ୧୮୯୩ ଶ୍ରୀପଞ୍ଚମୀ। ତାଙ୍କ ଜନ୍ମ ତାରିଖ ୨୭ ଜାନୁଆରୀ ୧୮୯୩। ସେ ମଂଜୁଷା ଗଡ଼ଜାତରେ ଜନ୍ମଗ୍ରହଣ କରିଥିଲେ। ସେ ଥିଲେ ପିତା ମାତଙ୍କର ତୃତୀୟ ସନ୍ତାନ। ପିତା ନାରାୟଣ ରଥ ଥିଲେ ତତ୍‌କାଳୀନ ଧରାକୋଟ ରାଜ୍ୟର ଦେବାନ। ୧୧ ବର୍ଷ ପର୍ଯ୍ୟନ୍ତ ସେ ଧରାକୋଟରେ ପାଠ ପଢ଼ିଥିଲେ।

(ରଥ ଶିବ ସୁନ୍ଦର, ''ତ୍ୟାଗବୀର ଜୟମଙ୍ଗଳ ରଥ'', ନବୀନ, ୨୬ ଜାନୁଆରୀ, ୧୯୯୩)

୧୯୧୪ ବେଳକୁ ସେ ମଂଜୁଷାରେ ଅବସ୍ଥାନ କରୁଥିଲେ ଏବଂ ମଜୁଂଷାରେ ଘଟୁଥିବା ସାଂସ୍କୃତିକ ଘଟଣାଗୁଡ଼ିକୁ ସେ ସମ୍ବାଦପତ୍ର ମାନଙ୍କରେ ପ୍ରକାଶ କରି ଆରମ୍ଭରୁ ତାଙ୍କର ସଂସ୍କାର ପ୍ରାଣର ପରିଚୟ ଦେଇଥିଲେ। ୧୯୧୪ ଜାନୁଆରୀ ୧୭ରେ ସମ୍ବଲପୁର ହିତୈଷିଣୀ ସମ୍ବାଦପତ୍ରରେ ମଂଜୁଷା ଶୀର୍ଷକ ସମ୍ବାଦରେ ସେ ପ୍ରକାଶ କରିଥିଲେ - ମଂଜୁଷା ରାଜଧାନୀରେ ପ୍ରାୟ ତିନିବର୍ଷ ହେଲା ଗୋଟିଏ ଅନ୍ଧରକ୍ଷିଣୀ ସଭା ପ୍ରତିଷ୍ଠିତ ହୋଇ ଚିରକଷ୍ଟ ଅନ୍ଧମାନଙ୍କୁ ରକ୍ଷଣାବେକ୍ଷଣ କରି ଚଳି ଆସୁଅଛି। ଏହି ସତ୍‌କାର୍ଯ୍ୟରେ ଶ୍ରୀମାନ୍ ଯୁବରାଜ ମହୋଦୟ ଓ ମଂଜୁଷାର ପ୍ରଜାବୃନ୍ଦ ମୁକ୍ତ ହସ୍ତ ହୋଇ ବିଶେଷ ସାହାଯ୍ୟ ପ୍ରଦାନ କରୁଅଛନ୍ତି। ଗତ ମାସ ୨୦ ତାରିଖ ଦିନ ଉକ୍ତ ସଭାର ଦ୍ୱିତୀୟ ବାର୍ଷିକ ଅଧିବେଶନ ହୋଇଯାଇଅଛି। ସଭାଗୃହଟି ନାନାଦି ସାଜସଜ୍ଜାରେ ସୁସଜ୍ଜିତ ହୋଇ ଅପୂର୍ବ ଶୋଭାଧାରଣ କରିଥିଲା ଏବଂ ସେଠାରେ ରାଜଧାନୀର ଭଦ୍ରବ୍ୟକ୍ତି, ଶିକ୍ଷକ ଓ ଛାତ୍ରମାନେ ସମ୍ମିଳିତ ହୋଇ ସଭା ଗୃହର ଆହୁରି ଶୋଭାବର୍ଦ୍ଧନ କରି ଦେଇଥିଲେ। ଉକ୍ତ ସଭାରେ ଶ୍ରୀମାନ୍ ଯୁବରାଜ ମହୋଦୟ ଅଗ୍ରଜ ଆସନ ଗ୍ରହଣ କଲାପରେ ସଭାର ସଂପାଦକ ଶ୍ରୀ କେ.ଭି. ରାଘବାଚ୍ଚରୀ ମହୋଦୟ ଇଂରାଜୀ ଭାଷାରେ ଓ ଷ୍ଟେଟ୍ କିଲ୍ଲାଦାର ଗୋବିନ୍ଦ ପାଠୀ ମହୋଦୟ ଓଡ଼ିଆ ଭାଷାରେ ବାର୍ଷିକ ରିପୋର୍ଟ ପାଠ କରି ତେଲୁଗୁ, ଓଡ଼ିଆ ଓ ଅନ୍ୟ ଜାତିର ସଭ୍ୟମାନଙ୍କୁ ବୁଝାଇ ଦେଇଥିଲେ। ଖଲ୍ଲିକୋଟ କଲେଜର ଛାତ୍ର ଅଗାଧୁ ବେହେରା ମହୋଦୟ ପବିତ୍ର କାର୍ଯ୍ୟରେ ଅଗ୍ରସର ହେବା ସର୍ବସାଧାରଣଙ୍କର କର୍ତ୍ତବ୍ୟ କର୍ମ ବୋଲି ନାନାଦି ଉଦାହରଣ ସହ ଇଂରାଜୀ ଭାଷାରେ ଗୋଟିଏ ପଦ୍ୟଗାନ କରିଥିଲେ। ତଦନନ୍ତର ସାମନ୍ତ ଶ୍ରୀ ଜଗନ୍ନାଥ ଦାସଙ୍କ ଲିଖିତ

"ଦାନଶୀଳତା" ବିଷୟରେ ଗୋଟିଏ ଦୀର୍ଘ ପ୍ରବନ୍ଧ ପଣ୍ଡିତ ଶ୍ୟାମସୁନ୍ଦର ମହୋଦୟ ପାଠକରି ସଭ୍ୟବୃନ୍ଦଙ୍କୁ ଧର୍ମମାର୍ଗରେ ଅଗ୍ରସର କରାଇ ଦେଇଛନ୍ତି। ତତ୍‌ପରେ ଶ୍ରୀମାନ୍ ସଭାପତି ମହୋଦୟ ଅନ୍ଧମାନଙ୍କୁ ନାନା ପ୍ରକାର ବିଦ୍ୟାଶିକ୍ଷା ଦେବାକୁ ଗୋଟିଏ ଗୃହର ବ୍ୟବସ୍ଥା କରିବା ନିମନ୍ତେ ପ୍ରସ୍ତାବ କଲା ପରେ ଅନ୍ଧମାନଙ୍କୁ ବସ୍ତ୍ର ପ୍ରଦାନ କରିଥିଲେ ଏବଂ ପାରଳାଖେମୁଣ୍ଡିର ଆଗନ୍ତୁକ ସୁଶିକ୍ଷିତ ଜନ୍ମାନ୍ଧ ବାବୁ ଅପର୍ଣ୍ଣା ପାଣିଗ୍ରାହୀ ମହୋଦୟ ହାରମୋନିୟମ ବାଦନ କରି ଗୋଟିଏ ସୁନ୍ଦର ଜାତୀୟ ସଂଗୀତ ଗାନ କରି ସଭ୍ୟବୃନ୍ଦଙ୍କର ମନମୁଗ୍ଧ କରି ଦେଇଥିଲେ। ଏହି ବିବରଣୀରୁ କିଶୋର ଜୟମଙ୍ଗଳ ରଥଙ୍କର ସଂସ୍କାରକ ଦୃଷ୍ଟି ସହଜରେ ଆବିଷ୍କାର କରାଯାଇପାରେ। ସେଥିପାଇଁ ସେ ମଂଜୁଷାର ଅନ୍ଧରକ୍ଷିଣୀ ସମାଜ ସଂପର୍କରେ ଆଲୋଚନା ସୁଦୂର ସମ୍ବଲପୁର ହିତୈଷିଣୀ ପୃଷ୍ଠାରେ ସ୍ଥାନ ଦେଇଥିଲେ।

୧୯୧୫ ବେଳକୁ ତାଙ୍କର ସାମାଜିକ ସାଂସ୍କୃତିକ କାର୍ଯ୍ୟକ୍ରମ ବେଶ୍ ପ୍ରସାରିତ ହୋଇଥିଲା। ସମାଜର କୁସଂସ୍କାର ପ୍ରତି ସେ ସତର୍କ ଦୃଷ୍ଟି ଦେଇ ପାରଳାଖେମୁଣ୍ଡି, ମଂଜୁଷା ଓ ଧରାକୋଟରୁ ସମ୍ବାଦମାନ ପ୍ରକାଶ କରାଉଥିଲେ। ସମାଜ ସଂସ୍କାର ଓ ପୁନର୍ଗଠନ ପାଇଁ ସଚେତନତା ତାଙ୍କର ୧୯୧୫ ବେଳକୁ ଅତି ପ୍ରଖର ଥିଲା। ୧୯୧୫ ଜାନୁଆରୀ ୯ ତାରିଖରେ ସମ୍ବଲପୁର ହିତୈଷିଣୀ ସମ୍ବାଦପତ୍ରରେ ପାରଳାରେ ସଂସ୍କାରକ ଦଳ ସଂପର୍କରେ ତାଙ୍କର ବିବରଣୀରୁ ସେହି ଦୃଷ୍ଟିକୋଣର ପରିଚୟ ମିଳେ। ସେଥିରେ ସେ ପ୍ରକାଶ କରିଥିଲେ – ପାରଳାର କରଣ ସାହିରେ କେତେକ ଉଚ୍ଚଶ୍ରେଣୀୟ ଛାତ୍ରଙ୍କ ଯତ୍ନରେ ଗୋଟିଏ ସମାଜ ଗଠିତ ହୋଇଅଛି। କରଣ ଜାତିର କୁସଂସ୍କାରଗୁଡ଼ିକୁ ଦୂର କରିବା ସମାଜର ମୁଖ୍ୟ ଉଦ୍ଦେଶ୍ୟ। ପ୍ରତ୍ୟେକ ଶୁକ୍ରବାର ରାତ୍ରୁ ୭ ଘଣ୍ଟାଠାରୁ ୯ ଘଣ୍ଟା ପର୍ଯ୍ୟନ୍ତ ସମାଜ କାର୍ଯ୍ୟ କରୁଥିବାର

ଦେଖି ଅତ୍ୟନ୍ତ ପ୍ରୀତ ହେଲୁ। କରଣ ଜାତିଟା ନାନା ଶାଖା ବିଶାଖାରେ ବିଭକ୍ତ ହୋଇଥିବାର ବୋଧହୁଏ କୌଣସି ପାଠକର ଅବିଦିତ ନାହିଁ। ତନ୍ମଧ୍ୟରୁ କୌଣସି ଏକ ଶାଖାରେ କରଣମାନେ ବ୍ରାହ୍ମଣମାନଙ୍କ ପରି ବାଲ୍ୟବିବାହ କରି ଆସୁଅଛନ୍ତି। ଏହି କାରଣରୁ ଅନେକ ସମୟରେ ବାଲ୍ୟବିଧବାମାନଙ୍କର କରୁଣ ଦୃଶ୍ୟ ଦେଖିବାକୁ ପଡ଼େ। ଏହି ବିଷୟ ଆମ୍ଭମାନଙ୍କର ସଂସ୍କାରକ ଶ୍ରୀବତ୍ସ ପଣ୍ଡା, ବି.ଏ. ବାରଂବାର କହି ଆସୁଅଛନ୍ତି। ତଥାପି କାହାର ମନ ଟିକିଏ ହେଲେ ଟଳିବାକୁ ନାହିଁ। କିନ୍ତୁ ପାଠକ ଶୁଣି ସୁଖି ହେବେ ଯେ ପାରଳାର ପ୍ରାୟ ସମସ୍ତ ନିମ୍ନ ଉଚ୍ଚଶ୍ରେଣୀୟ କରଣ ଛାତ୍ର ପ୍ରୋକ୍ତ ସମାଜରେ ପ୍ରକାଶ କରି ଦେଇଅଛନ୍ତି କି ସେମାନେ ୨୫ ବର୍ଷ ବୟସରେ ପଦାର୍ପଣ ନ କରିବା ଯାଏ କଦାପି ବିବାହ ହେବେ ନାହିଁ। ଏହା ହେଲେ ପ୍ରାପ୍ତ ବୟସୀ ବାଳିକାଙ୍କ ସଂଖ୍ୟା ବଢ଼ି ସହଜରେ ଯୁବତୀ ବିବାହର ପ୍ରଥା ଚଳିଯିବ ଏବଂ ବାଲ୍ୟ ବିଧବାର ସଂଖ୍ୟା କମିଯିବ, ଏଥିର ଅଣୁମାତ୍ର ସନ୍ଦେହ ନାହିଁ। ଅତି ମାନ୍ୟାସ୍ପଦ ପଣ୍ଡା ମହାଶୟଙ୍କର ପ୍ରସ୍ତାବ ଏଠାକାର କରଣ ଛାତ୍ରମାନଙ୍କ ଦ୍ୱାରା କାର୍ଯ୍ୟରେ ପରିଣତ ହେବାର ଦେଖିଲୁଁ। କିନ୍ତୁ ଅଧଃପତିତ ବ୍ରାହ୍ମଣ ଜାତି ଏହି ପ୍ରଥା କେବେ ଅନୁକରଣ କରିବେ ବୁଝିପାରୁନାହିଁ। ପୂର୍ବେ ବ୍ରାହ୍ମଣମାନଙ୍କର ଯୁବତୀ ବିବାହ ପ୍ରଥା ପ୍ରଚଳିତ ଥିଲା। ଏହା ସଂସ୍କାରକ ମହାଶୟମାନେ ଶତଶତ ନିଦର୍ଶନ କରି କହିଯାଇଛନ୍ତି। କିନ୍ତୁ ପଠାଣ ରାଜତ୍ୱରେ ହିନ୍ଦୁ ମହିଳାମାନଙ୍କ ପ୍ରତି ପଠାଣ ମାନଙ୍କର ଜୋର୍ ଅନ୍ୟାୟାଚରଣ ହେତୁ ବାଲ୍ୟବିବାହ ପ୍ରଥା ଉଠିଯାଇଥିଲା। **ଆଜି ଆଉ ସେ କ୍ରୁର ଯବନର ରାଜତ୍ୱ ନାହିଁ। ଆଜି ଆମ୍ଭେମାନେ ଇଂରାଜୀ ରାଜତ୍ୱର ସୁଖଶାନ୍ତି ଅନୁଭବ କରୁଥାଇ।** ଏପରି ସମୟରେ ଆଉ ସେହି କୁତ୍ସିତ ପ୍ରଥା ରଖି ସମାଜରେ ବାଲ୍ୟ ବିଧବାମାନଙ୍କର କ୍ରନ୍ଦନ ଧ୍ୱନି ଶୁଣି କାହାର ହୃଦୟ ବିଚଳିତ ନ ହେବ ? ହେ ବ୍ରାହ୍ମଣ ଭାଇମାନେ !

ସେହି କୁସଂସ୍କାର ଶଯ୍ୟାରୁ ଉଠ। ଆଉ ସେହି ବାଲ୍ୟବିବାହ କରି ଅସଂଖ୍ୟ ବିଧବାର କରୁଣ ଦୁଃଖ ଦେଖୁଥିବା ଯାଏ ଆମ୍ଭ ଜାତି ଓ ଦେଶର ଉନ୍ନତି ଆଶା ଦୁରାଶା ମାତ୍ର ଏବଂ ବାଲ୍ୟ ବିଧବା ଦୁଃଖ କରୁଥିବା ଯାଏ ଆମ୍ଭର କଦାପି ମଙ୍ଗଳ ହେବ ନାହିଁ।" ଏହିପରି ମତ ପ୍ରକାଶ କରି ରଥ ପାରଳା ସଂସ୍କାରକ ସମାଜର ଉତ୍ତରୋତ୍ତର ବୃଦ୍ଧି ପାଇଁ ନିବେଦନ କରିଥିଲେ।

ସମ୍ବାଦପତ୍ର ଏବଂ ପାରଳାର ଛାତ୍ରାବାସ ଉପରେ ସେ ୧୯୧୫ରେ ଅଧିକ ଗୁରୁତ୍ୱ ଦେଇ ମଂଜୁଷାରୁ ଏକ ପ୍ରସଙ୍ଗ ସମ୍ବଲପୁର ହିତୈଷିଣୀରେ ଉପସ୍ଥାପନ କରିଥିଲେ। ସେଥିରେ ସେ କହିଥିଲେ - ବର୍ତ୍ତମାନ ସାହିତ୍ୟୋନ୍ନତିର ଗୋଟିଏ ଅଂଗ ସମ୍ବାଦପତ୍ର ଓ ମାସିକ ସାହିତ୍ୟପତ୍ର ପାଠ କରିବା। ଯେଉଁ ଦେଶରେ ଯେତିକି ପରିମାଣର ସାହିତ୍ୟ ପତ୍ରିକାର ବିସ୍ତାର ଲାଭ କରିଅଛି, ସେହି ଦେଶ ସେତିକି ପରିମାଣରେ ସଭ୍ୟତାଲୋକରେ ଆଲୋକିତ। ବର୍ତ୍ତମାନ ବଂଗରେ ଅଧିକାଂଶ ସମ୍ବାଦପତ୍ରର ଆଧିପତ୍ୟ ସ୍ଥାପିତ ହୋଇଥିବାରୁ ବଂଗ ଭାରତ ବର୍ଷର ଉଚ୍ଚତମ ସଭ୍ୟତା ମଞ୍ଚରେ ଅଧିରୁଢ଼ ହୋଇଅଛି। କିନ୍ତୁ ଏହିପରି ସୁଦଶା ଆଉ ଉତ୍କଳ ଭାଗ୍ୟରେ କେବେ ଘଟିବ? ସମ୍ବାଦପତ୍ରର ବିଶେଷ ଗ୍ରାହକ ନ ହେଲେ ତାହାର ଉନ୍ନତି ଆଶା ଦୁରାଶା ମାତ୍ର। ସେଦିନ ମଂଜୁଷା ଜ୍ଞାନୋଦୟ ସମାଜରେ ସ୍ୱନାମଧନ୍ୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ମହାଶୟ କହିଥିଲେ - "ଯେତେବେଳେ ବଂଗରେ ଖଣ୍ଡିଏ ପତ୍ରିକା ବାହାରିଲା, ସେତେବେଳେ ବଂଗର ଗୋଟିଏ ଛାତ୍ରାବାସର ପ୍ରତ୍ୟେକ ଛାତ୍ର ଉପବାସ ରହି ସେହି କଷ୍ଟ ସଞ୍ଚିତ ଧନ ଉକ୍ତ ପତ୍ରିକାକୁ ପ୍ରଦାନ କରି ପ୍ରତ୍ୟେକ ତାହାର ଗ୍ରାହକ ହୋଇଥିଲେ। ଜଣେ ସେହି ପତ୍ରିକାର ଗ୍ରାହକ ହେଲେ ସମସ୍ତେ ପଢ଼ି ପାରିନଥାନ୍ତେ କି? ପଢ଼ି ପାରିଥାଆନ୍ତେ। କିନ୍ତୁ ସେମାନେ ତାହାଙ୍କର ବଂଗାଳୀ ପତ୍ରିକାର ଉନ୍ନତି ଦେଖିବାକୁ ଲାଳାୟିତ। ତେଣୁ

ସେମାନେ ସେହି, ପବିତ୍ର କାର୍ଯ୍ୟରେ ଅଗ୍ରସର ହୋଇ ସମସ୍ତଙ୍କର ଧନ୍ୟବାଦାର୍ହ ହେଲେ। ସେମାନେ ଅନ୍ୟ ଭାଷାରେ ପତ୍ରିକା ଅପେକ୍ଷା ନିଜ ମାତୃଭାଷାରେ ପତ୍ରିକାକୁ ଅଧିକ ଶ୍ରଦ୍ଧା କରନ୍ତି। ଓଡ଼ିଆ ଛାତ୍ରମାନଙ୍କର ତାହା କି ଅନୁକରଣୀୟ ନୁହେଁ? ସେ ଦିନେ ପାରଳାର ଜଣେ ଧନାଢ୍ୟ ଓଡ଼ିଆ ଛାତ୍ର ଖଣ୍ଡିଏ ବଂଗଳା ପତ୍ରିକା ପଢୁଥିବାର ଦେଖି ପଚାରିଲେ - "ଆପଣ କେତେ ଖଣ୍ଡ ଓଡ଼ିଆ ପତ୍ରିକାର ଗ୍ରାହକ।" ସେ କହିଲେ - "ଓଡ଼ିଆ ପତ୍ରିକାଗୁଡ଼ିକର କଳେବର ନିତାନ୍ତ କ୍ଷୁଦ୍ର ଓ ମୂଲ୍ୟବେଶୀ। ଏଣୁ ମୁଁ ଓଡ଼ିଆ ପତ୍ରିକା ପ୍ରତି ଆସ୍ଥା ରଖେ ନାହିଁ। ମାତ୍ର ମୁଁ ତିନିଖଣ୍ଡ ବଂଗଳା ପତ୍ରିକାର ଗ୍ରାହକ।" ଏହା ଶୁଣି ଜୟମଙ୍ଗଳ ଦୁଃଖ ଓ ଚିନ୍ତାରେ ବୁଡ଼ି ରହିଲେ। ସେ ଏହି ପ୍ରସଙ୍ଗରେ ଲେଖିଥିଲେ - ପାରଳା ଛାତ୍ରାବାସରେ ଗୋଟିଏ ଓଡ଼ିଆ ଛାତ୍ର ସମାଜ ପ୍ରତିଷ୍ଠିତ ହୋଇ ସେ ତାହାର ଉଦ୍ଦେଶ୍ୟ ସାଧନ କରୁଅଛି। ସମାଜର ଉଦ୍ଦେଶ୍ୟ ଓଡ଼ିଆ ଛାତ୍ରମାନଙ୍କୁ ଓଡ଼ିଆ ପତ୍ରିକାର ଗ୍ରାହକ ହେବା ନିମନ୍ତେ ପ୍ରଚାର କରିବା ଏବଂ ସମାଜ ନିଜେ ସମସ୍ତ ଓଡ଼ିଆ ପତ୍ରିକାର ଗ୍ରାହକ ହେବା। ଏହି ପ୍ରସଙ୍ଗରୁ ଜୟମଙ୍ଗଳ ତରୁଣ ଜୀବନରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ କିପରି ଚେଷ୍ଟିତ ଥିଲେ ତାହାର ପ୍ରମାଣ ଆବିଷ୍କାର କରାଯାଇପାରେ। (ସମ୍ବଲପୁର ହିତୈଷିଣୀ, ଜାନୁଆରୀ ୨୩, ୧୯୧୫)

ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ଓ ଉଦ୍ଦେଶ୍ୟର ପ୍ରଚାର ଓ ପ୍ରସାର ପାଇଁ ସେ ମଧ ସମ୍ବଲପୁର ହିତୈଷିଣୀରେ ଏକ ଦୀର୍ଘ ଲେଖା ୧୯୧୫ ଏପ୍ରିଲ ୨୪ରେ ପ୍ରକାଶ କରିଥିଲେ। ସେଥିରେ ସେ ଉଲ୍ଲେଖ କରିଥିଲେ - ଓଡ଼ିଆ ଜାତୀୟ ମହାଯଜ୍ଞର ଯେଉଁ ମହତ୍ ଉଦ୍ଦେଶ୍ୟ ଅଛି, ଉତ୍କଳର ଘରେ ଘରେ ତାହାର ପ୍ରଚାର ହେବା ଅତ୍ୟାବଶ୍ୟକ ହୃଦୟଙ୍ଗମ କରି ଉତ୍କଳ ସମ୍ମିଳନୀର କର୍ତ୍ତୁପକ୍ଷଗଣ ପ୍ରଚାରକ ନିଯୁକ୍ତ କରିଅଛନ୍ତି। ପ୍ରଚାରକ ମହାଶୟ ଗତ ବର୍ଷ

ଉତ୍କଳର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ଯାଏ ବଡ଼ କୌଶଳରେ ପ୍ରଚାର କ୍ରିୟାଶେଷ କରିଅଛନ୍ତି ଏବଂ ଏହି ବର୍ଷ ମଧ୍ୟ ଦ୍ୱିଗୁଣ ଉତ୍ସାହର ସହିତ କାର୍ଯ୍ୟ କରିବାର ଦେଖୁଁ। ଏଥି ସକାଶେ ପ୍ରଚାରକ ମହାଶୟଙ୍କ ନିକଟରେ ସମସ୍ତ ଉତ୍କଳବାସୀ ଓ ଉତ୍କଳଭାଷୀ ଚିରକୃତଜ୍ଞ। କିନ୍ତୁ ଏଡ଼େ ବଡ଼ ଦେଶରେ ଜଣେ ପ୍ରଚାରକଙ୍କ ଦ୍ୱାରା ପ୍ରଚାର କ୍ରିୟା ସାଧନ ହେବା ବଡ଼ କଷ୍ଟପ୍ରଦ ବିଷୟ। ସ୍କୁଲ କଲେଜମାନଙ୍କରେ ବର୍ତ୍ତମାନ ଦୁଇ ମାସ ଗ୍ରୀଷ୍ମାବକାଶ ହୁଏ। ଏହି ସମୟରେ ଯୁବକଗଣଙ୍କ କର୍ତ୍ତବ୍ୟ ସମ୍ବନ୍ଧରେ "ଆଶା" ବଡ଼ ସୁନ୍ଦର ପ୍ରସ୍ତାବଟିଏ ଉପସ୍ଥାପନ କରିଅଛନ୍ତି। ଆଶାକରୁ ଛାତ୍ରମାନେ ସେହି ପ୍ରସ୍ତାବଟିକୁ ପାଳନ କରିବାରେ ପରାଙ୍ମୁଖ ହେବେ ନାହିଁ। ଇତି ଅବସରରେ ଶିକ୍ଷିତମାନଙ୍କର ମଧ୍ୟ ଗୋଟିଏ କର୍ତ୍ତବ୍ୟ ଅଛି। ଓଡ଼ିଆ ଶିକ୍ଷକ ବିଶେଷତଃ ଓଡ଼ିଆ ପଣ୍ଡିତମାନେ ଯଦି ନିଜନିଜ ଗ୍ରାମରେ ଏବଂ ତନ୍ନିକଟବର୍ତ୍ତୀ ଗ୍ରାମମାନଙ୍କରେ ପ୍ରତ୍ୟେକ ଓଡ଼ିଆ ଗୃହରେ ଏହି ଦୁଇମାସ କାଳ ପ୍ରଚାର କରନ୍ତେ, ତେବେ ଅତି ସହଜରେ ଅନେକ ସମ୍ମିଳନୀର ଉଦ୍ଦେଶ୍ୟ ବୁଝିପାରନ୍ତେ। ଅଧୁନା ନାନା ସ୍ଥାନରେ ପ୍ରଗାଢ଼ ସ୍ୱାର୍ଥତ୍ୟାଗ କରି ଚହଳ ପଡ଼ିଯାଇଥିବା ସ୍କୁଲରେ ଶିକ୍ଷିତ ଶିକ୍ଷକମାନେ ପ୍ରୋକ୍ତ ବିଷୟ ନବୀନ ଉତ୍ସାହ ସହ ସାଧନ କରିବା କିଛି ବିଚିତ୍ର ନୁହେଁ। ପ୍ରଚାର କାର୍ଯ୍ୟ ଆରମ୍ଭ କରିବା ସମୟରେ ଉତ୍କଳର ସୁପରିଚିତ ପ୍ରଚାରକ ଶ୍ରୀଯୁକ୍ତ ଅନନ୍ତ ମିଶ୍ର ମହାଶୟଙ୍କ କାର୍ଯ୍ୟାବଳୀକୁ ଆଦର୍ଶ ରଖିବାକୁ କେହି ଭୁଲିବେ ନାହିଁ। ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିକୁ ଜାତୀୟ ମନ୍ତ୍ରରେ ଦୀକ୍ଷିତ କରିଅଛି ଏବଂ ସମ୍ମିଳନୀର ପ୍ରଧାନ ଉଦ୍ଦେଶ୍ୟ ଜାତୀୟ ଜୀବନରେ ଜାତିକୁ ଗଢ଼ିବା। ଏହି ସଦୁଦ୍ଦେଶ୍ୟ ସମ୍ମିଳନୀ ବହୁ ଦୂର ଯାଏ ସାଧନ କରିଅଛି। କିନ୍ତୁ ଏହା ପଲ୍ଲୀରେ ବିଶେଷ ଭାବେ ପ୍ରଚାର ହେବା ଉଚିତ। ପଲ୍ଲୀକୁ ଧରି ଆମ୍ଭର ଜାତିର ସୃଷ୍ଟି କହିଲେ ଚଳେ। ମାତ୍ର ଉତ୍କଳର ବିଶେଷତଃ ଗଞ୍ଜାମର ପଲ୍ଲୀବାସୀ ଆଜିଯାଏ

ସମ୍ମିଳନୀର ଅର୍ଥ ବୁଝିପାରି ନାହାଁନ୍ତି। ସେଦିନ ପାରଳାର କେତେକ ଶାସନ ବ୍ରାହ୍ମଣ ପାରଳା ଦଶମ ଅଧିବେଶନକୁ "ରାଜାଘର ଉତ୍ସବ" ବୋଲି କହିଥିଲେ ଏବଂ ସେମାନେ କହନ୍ତି "ଓଡ଼ିଶାରେ କିଏ ପାଇଟିରେ ଅଛନ୍ତି ହେ ! ସମସ୍ତେ ତ ଅସଭ୍ୟ।" ଏହିପରି ଅଧିକାଂଶ ଲୋକ ନିଜେ ନିଜେ ଜାତିକୁ ଚିହ୍ନି ନଥିବା ବେଳେ ଆମ୍ଭେମାନେ କେବଳ ନଗରମାନଙ୍କରେ ପ୍ରଚାର କାର୍ଯ୍ୟ ଶେଷ କରି ଅତି ଆନନ୍ଦରେ ବସି ପଡ଼ିବାଟା ଅନୁଚିତ ନୁହେଁ କି ? ମକଦ୍ଦମା ହେତୁ ପାରଳା ଶାସନ ବ୍ରାହ୍ମଣମାନଙ୍କ ଦଶା ଦିନକୁ ଦିନ ହୀନରୁ ହୀନତର ହେବାକୁ ବସିଅଛି। ସେମାନେ ବହୁ କଷ୍ଟୋପାର୍ଜିତ ଧନ ସାମାନ୍ୟ ଗୋଲମାଳ ଉତ୍‌ଥାପନ କରି କୋଟରେ ନେଇ ବାହାରି ଆସନ୍ତି। ସେମାନେ ଦେଶ ହିତକର କାର୍ଯ୍ୟରେ ଧନବ୍ୟୟ କରିବେ ବା କେଉଁଠାରେ ? ଏଣୁ ଯେ ସେହି ଶାସନମାନଙ୍କରେ ପ୍ରଚାର କରିବେ ସେ ସର୍ବ ପ୍ରଥମେ ପ୍ରୋକ୍ତ ପ୍ରସ୍ତାବଟିକୁ ବୁଝାଇ ଦେବାକୁ ଭୁଲିବେ ନାହିଁ। ଲୋକଙ୍କ ମନରେ ଜାତୀୟଭାବ ଜନ୍ମାଇବା ଉଦ୍ଦେଶ୍ୟରେ ସମ୍ମିଳନୀର ଅନେକଗୁଡ଼ିଏ ଜାତୀୟ ସଂଗୀତ ବଣ୍ଟନ କରାଯାଏ। ମାତ୍ର ତେତିକିରେ ଯଥେଷ୍ଟ ହୋଇନାହିଁ। ଯେଉଁପରି ଖ୍ରୀଷ୍ଟିଆନ୍ ମିଶନାରୀମାନେ ନିଜ ଧର୍ମ ପ୍ରଚାର କଲାବାଦ ତତ୍ ଧର୍ମ ସମ୍ବନ୍ଧୀୟ ରଚିତ କ୍ଷୁଦ୍ର ପୁସ୍ତକମାନ ବିନା ମୂଲ୍ୟରେ ବା ସାମାନ୍ୟ ମୂଲ୍ୟରେ ଦେଇଥାଆନ୍ତି ସେହିପରି ଆମ୍ଭ ପ୍ରଚାରକ ମହାଶୟମାନେ ପ୍ରଚାର ଶେଷକରି ଜାତୀୟ ଗୀତ ସନ୍ନିବିଷ୍ଟ କ୍ଷୁଦ୍ର ପୁସ୍ତକମାନ ବିନା ମୂଲ୍ୟରେ ବଣ୍ଟନ କରିବା ଉଚିତ। ସେହି ପୁସ୍ତକଗୁଡ଼ିକ କେତେକ ଦେଶାଭିମାନୀ ବ୍ୟକ୍ତି ରଚନା କରିବାକୁ ହେବ ଏବଂ ସେଗୁଡ଼ିକ ଦେଶର ରାଜା, ଜମିଦାର, ଧନୀ ଏବଂ ବିଶେଷତଃ ପ୍ରେସ୍ ସଂପାଦକମାନେ ଛପାଇ ଦେଇ ଦେଶବାସୀଙ୍କ କୃତଜ୍ଞଭାଜନ ହେବାକୁ ହେବ। ଏହା ହେଲେ ପଲ୍ଲୀ ଏବଂ ନଗର ଜାତୀୟ ମନ୍ତ୍ରରେ ଦୀକ୍ଷିତ ହେବ ଏବଂ ଅତି ଶୀଘ୍ର ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ପ୍ରଚାର ହେବ।

ଏହି ଦୀର୍ଘ ବିବରଣୀରେ ଜୟମଙ୍ଗଳ ରଥ ଓଡ଼ିଶାର ମହାଜାତୀୟ ଅନୁଷ୍ଠାନ ଉତ୍କଳ ସମ୍ମିଳନୀର କାର୍ଯ୍ୟକ୍ରମ ପ୍ରଚାର ପାଇଁ ନାନାବିଧ ଉପାୟ ଚିନ୍ତା କରିବାକୁ ହେବ ବୋଲି ଉପଦେଶ ଦେବା ସଙ୍ଗେ ସଙ୍ଗେ ଉତ୍କଳ ସମ୍ମିଳନୀ ଭାବଧାରା କିପରି ଓଡ଼ିଶାର ପୁରପଲ୍ଲୀରେ ପ୍ରସାରିତ ହେବ ତାହାର ଉପାୟମାନ ସୂଚାଇଥିଲେ ।

୧୯୧୫ ମସିହା ମେ ୨୯ରେ ସମ୍ବଲପୁର ହିତୈଷିଣୀରେ ରଥଙ୍କର ରଚିତ "ପୁସ୍ତକ ପ୍ରତି" କବିତା ଏକାନ୍ତ ପ୍ରଣିଧାନଯୋଗ୍ୟ । ଏହି କବିତାଟି ନିମ୍ନରେ ଉଦ୍ଧାର କରାଯାଇଛି :

ତୋ ଶରୀର ଗଢ଼ା ତାଳପତ୍ର କାଗଜରେ
ମାନବେ ଢ଼ାଳନ୍ତି ଭକ୍ତି ତୋ ଶ୍ରୀଚରଣରେ ।

କବି ମାନସିକ-ଶକ୍ତି ଅଟେ ତୋ ଜୀବନ
ଭାବ ଅଳଂକାରେ ରୁଦ୍ଧ ହୋଇଛୁ ମଣ୍ଡନ ।

କେତେ ଭୟଙ୍କର ଯୁଦ୍ଧ ନିହତ ତୋ ଦେହେ
କେତେ ଉପଦେଶ ଦାନ କରୁଛୁ ତୁ ସ୍ନେହେ ।

କ୍ଷଣକେ ହସାଉ ତୁହି କ୍ଷଣକେ କନ୍ଦାଉ
କ୍ଷଣକେ ନୈରାଶ୍ୟ ସ୍ରୋତେ ପୁଣି ତୁ ଭସାଉ ।

ବିକଶେ କେତେ ମନୀଷି ଗଣଙ୍କ ଜୀବନ
ତାଙ୍କରି ଚରିତ୍ର ପ୍ରତି ଧାଏଁ କେତେ ମନ ।

କରିଣ ଅନୁକରଣ ସେ ସ୍ୱଚ୍ଛ ଚରିତ୍ର
ହେଲେଣି କେତେ ମନୁଷ୍ୟ ତୋ କର୍ଷ ପବିତ୍ର ।

ପୂର୍ବପୁରୁଷଙ୍କ କଥା କରୁଛୁ ପ୍ରଚାର
ଖଗୋଳ ଭୂଗୋଳ ରତ୍ନଫଳ ତୋ କୃପାର ।

ପ୍ରାଣୀଙ୍କି ରଖୁତୁ ସୁସ୍ଥେ ଆରେ ଚିକିତ୍ସକ
ଅକ୍ଷୁଣ୍ଣ ରଖିଛୁ ରୀତି ନୀତି ମାନବଙ୍କ।

ଚାଲିଗଲେଣି ଏ ମର୍ତ୍ତ୍ୟ ଧାମ ଛାଡ଼ି କବି
ତାଙ୍କର ଜୀବନ ଧନ୍ୟ! ମାତ୍ର ତୋତେ ଲଭି।

ତୁ ଅଟୁ ତାଙ୍କର ଜ୍ୟୋତିର୍ମୟ ସ୍ମୃତି ଚିହ୍ନ
ସଂସାରେ ତାଙ୍କର ଆଉକେ ନାହିଁ ତୋ ଭିନ୍ନ।

ତୋ କରୁଣା ଲଭି ମୂର୍ଖେ ହୁଅନ୍ତି ପଣ୍ଡିତ
ନାହିଁ ଲୟଲେଶ ଯେହୁ ଅର୍ପେ ତୋରେ ଚିତ୍ତ।

ଭ୍ରମେ ଏ ସଂସାରେ ମୁହିଁ ହୋଇ ଅଜ୍ଞାନାନ୍ଧ
ତୁଟୁ ସେ ଅଜ୍ଞାନ ମତେ ତୋ ସଂଗରେ ବାନ୍ଧ।

୧୯୧୭ ବେଳକୁ ଜୟମଙ୍ଗଳ କର୍ମ ପଥରେ ବ୍ୟଗ୍ରଗତି କରିଛନ୍ତି। ସେତେବେଳେ ବୃହତ୍‌ଖେମୁଣ୍ଡିର ରାଜାଙ୍କ ଆନୁକୂଲ୍ୟରେ "ସମାଜମିତ୍ର" ନାମକ ଖଣ୍ଡିଏ ମାସିକ ପତ୍ରିକା ପ୍ରକାଶ ପାଇଥିଲା। ପରେ ଧରାକୋଟ ରାଜା (ମଦନମୋହନ ସିଂହଦେବ)ଙ୍କ ସହଯୋଗରେ ପଣ୍ଡିତ କାଶିନାଥ ରାଜଗୁରୁଙ୍କ ସଂପାଦନାରେ ଏହାର ତୃତୀୟ ସଂଖ୍ୟା ପ୍ରକାଶ ପାଇଲା। ଏହି ପତ୍ରିକାରେ ହିନ୍ଦୁ ସମାଜ ଓ ହିନ୍ଦୁ ଧର୍ମର ଉପଯୋଗୀ ଅନେକ ବିଷୟ ସ୍ଥାନ ପାଇଥିଲା। ଏହାର ସହକାରୀ ସଂପାଦକ ଭାବେ ଜୟମଙ୍ଗଳ ରଥ କିଛି ମାସ କାର୍ଯ୍ୟ କରିଥିଲେ। (ଉତ୍କଳ ଦୀପିକା, ୧୫ ସେପ୍ଟେମ୍ବର, ୧୯୧୭) ୧୯୧୮ରେ ସେ ମଧ୍ୟ ସମାଜମିତ୍ରର ମ୍ୟାନେଜର ଥିଲେ। (ସମ୍ବଲପୁର ହିତୈଷିଣୀ, ୧ ଜୁନ୍ ୧୯୧୮)

"ସମାଜମିତ୍ର"ର ସହସଂପାଦକ ଭାବେ କିଛି ମାସ କାର୍ଯ୍ୟକରି ଜୟମଙ୍ଗଳ ରଥ ଓଡ଼ିଆ ଶିକ୍ଷାଦେବା ସକାଶେ ଗଂଜାମ ଜିଲ୍ଲା ବୋର୍ଡ

ଦ୍ୱାରା ଆସିକା ଏବଂ ବୁଗୁଡ଼ାରେ ଓଡ଼ିଆ ଶିକ୍ଷକ ଭାବେ ନିଯୁକ୍ତ ହୋଇଥିଲେ । ୧୯୨୦ରେ ସମଗ୍ର ଭାରତବର୍ଷର ପ୍ରତ୍ୟେକ ଭାଷାର ଉନ୍ନତି ସାଧନ ଉଦ୍ଦେଶ୍ୟରେ ନିଖିଳ ଭାରତ ସାହିତ୍ୟ ସଂଘ ପ୍ରତିଷ୍ଠିତ ହୋଇଥିଲା । ବିଭିନ୍ନ ଭାଷା ମଧ୍ୟରେ ମୈତ୍ରୀ ସମ୍ବନ୍ଧ ସଂସ୍ଥାପିତ କରିବା ପାଇଁ ନିଖିଳ ଭାରତ ସାହିତ୍ୟ ସଂଘ ବିଭିନ୍ନ ପ୍ରାଦେଶିକ ଭାଷାରେ ଜୁନ୍ ୨୨ରୁ ମେ ୫ ୧୯୨୦ ମଧ୍ୟରେ ଉପାଧି ପରୀକ୍ଷାମାନ ଗ୍ରହଣ କରିଥିଲେ । ଆସିକାରେ ନିଖିଳ ଭାରତ ସାହିତ୍ୟ ସଂଘ ଉପାଧି ପରୀକ୍ଷା ଚଳାଇବା ଭାର ଜୟମଙ୍ଗଳ ରଥଙ୍କୁ ଦିଆ ଯାଇଥିଲା । ଏହା ଏକ ଗୌରବମୟ ଘଟଣା । (ଉତ୍କଳ ଦୀପିକା, ମାର୍ଚ୍ଚ ୨୦, ୧୯୨୦)

ଓଡ଼ିଆ ଶିକ୍ଷକ ଭାବରେ କିଛି କାଳ କାର୍ଯ୍ୟ କରିବା ପରେ ୧୯୨୨ ଏପ୍ରିଲ ମାସବେଳକୁ ରଥ ଏହି ପଦ ତ୍ୟାଗ କରିଥିଲେ । ଆସିକା ଏବଂ ବୁଗୁଡ଼ାରେ ହେଡ୍‌ମାଷ୍ଟର ମାନଙ୍କ ସଂଗେ ଚଳି ନ ପାରିବା ଅଭିଯୋଗରେ ଜିଲ୍ଲାବୋର୍ଡ଼ ତାଙ୍କୁ କାର୍ଯ୍ୟରୁ ନିଷ୍କାସନ କରିଥିଲା ବୋଲି ଆଶା ଏପ୍ରିଲ ୩ ୧୯୨୨ରେ ପ୍ରକାଶିତ ହୋଇଥିଲା । ଏହି ଆଦେଶରେ କ୍ଷୁବ୍ଧ ହୋଇ ରଥ "ମୋ ଇସ୍ତଫା ବୃତ୍ତାନ୍ତ" ନିମ୍ନ ପ୍ରକାରରେ ଲେଖିଥିଲେ;

"ଏତିକି ବୁଝିଛି ଯେ ଜିଲ୍ଲାବୋର୍ଡ଼ ସରକାରର ଗୋଟିଏ ଯନ୍ତ୍ର । ବେସରକାରୀ ଲୋକେ ତାକୁ ଚଳାଇ ପାରିବେ ନାହିଁ । ନୌକର ସାହି ହାତରୁ ଜିଲ୍ଲାବୋର୍ଡ଼ ଯେପରି ମୁକ୍ତ ହେବ ସେଥିପାଇଁ ପ୍ରାଣପଣେ କାମ କରି ତାହାପରେ ତାକୁ ଚଳାଇବା ଭାର ଦେବା ଆବଶ୍ୟକ । ଯେଉଁ ଶିକ୍ଷାପ୍ରଣାଳୀ ନରକର ଦ୍ୱାର ଫିଟାଇ ଦେଇଛି ବୋଲି ଆଜି ଭାରତ କୋଟି କଣ୍ଠରେ ସ୍ୱୀକାର କରୁଅଛି, ଅନ୍ତତଃ ସେହି ଶିକ୍ଷାପ୍ରଣାଳୀ ବଦଳାଇବା କ୍ଷମତା, ଜିଲ୍ଲାବୋର୍ଡ଼ଠାରେ ଅଛି କି ? ଯଦି ଅଛି, ଭାରତର ଏ ନବଜାଗରଣ ବେଳେ ଜିଲ୍ଲାବୋର୍ଡ଼ ନିଦ୍ରିତ କି ହେତୁ ? ଓଡ଼ିଆ ସାହିତ୍ୟ ଶିକ୍ଷାଦେବା

ପାଇଁ ଜିଲ୍ଲାବୋର୍ଡ଼ ମୋତେ ନିଯୁକ୍ତ କରିଥିଲେ। ଓଡ଼ିଆ ପିଲାମାନଙ୍କର ମାତୃଭାଷା ସ୍କୁଲ କଲେଜରେ ତାକୁ ସେକେଣ୍ଡ ଲାଙ୍ଗୁଏଜ୍ ବୋଲି କହନ୍ତି। ଏଠାରେ ଇଂରାଜି ଯେତେ ନଜର ଦେବାକୁ ହୁଏ ମାତୃଭାଷା ପ୍ରତି ତାହାର ଏକ ଚତୁର୍ଥାଂଶ ମଧ୍ୟ ଦିଆଯାଏ ନାହିଁ। ଏପରିକି, ମାତୃଭାଷାରେ ଉତ୍ତୀର୍ଣ୍ଣ ନ ହେଲେ ମଧ୍ୟ ଇଂରାଜୀ ଜ୍ଞାନ ଦେଖି ଛାତ୍ରକୁ ଉଚ୍ଚଶ୍ରେଣୀକୁ ନିଆଯାଏ। ଫଳରେ ମାତୃଭାଷା ପ୍ରତି ଛାତ୍ରର କିଛି ଆସ୍ଥା ନାହିଁ। ଯେଉଁ ଶିକ୍ଷାବିଭାଗରେ ମାତୃଭାଷାର ସ୍ଥାନ ଏତେ ନିଚ୍ଚରେ ସେଥିରେ ଦେଶର ଭବିଷ୍ୟତ ଯେ କି କଳଂକମୟ ହେଉଥିବ ତାହା ଗଭୀର ଭାବେ ଚିନ୍ତା କରିବା ପାଇଁ ପ୍ରତ୍ୟେକ ଶିକ୍ଷକ ଓ ଛାତ୍ରଙ୍କୁ ମୁଁ ଅନୁରୋଧ କରୁଅଛି ଏବଂ ଯେ କୌଣସି ଭାବରେ ହେଉ ଜିଲ୍ଲାବୋର୍ଡ଼ ଏଥିରୁ ମୋତେ ଉଦ୍ଧାର କରିଥିବା ହେତୁ ତାଙ୍କ ଅନ୍ୟାୟ ଓ ଅସଂଗତ ଆଦେଶର କୌଣସି ପ୍ରକାର ପ୍ରତିବାଦ ନକରି ମୁଁ କେବଳ ଧନ୍ୟବାଦ ପ୍ରଦାନ କରୁଅଛି।" ଏହାପରେ ସେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଗଂଜାମ ଜିଲ୍ଲା କଂଗ୍ରେସର ଗଠନାତ୍ମକ କର୍ମରେ ଅଂଶ ଗ୍ରହଣ କରିଥିଲେ। ୧୯୨୧ର ଶେଷ ଭାଗରେ ସେ ସ୍ୱରାଜ୍ୟ ସ୍ୱେଚ୍ଛାସେବକ ଦଳରେ ଅନ୍ତର୍ଭୁକ୍ତ ହୋଇଥିଲେ। (ଆଶା, ଏପ୍ରିଲ ୩, ୧୯୨୨)

୧୯୨୨ ଅଗଷ୍ଟ ବେଳକୁ ଅସହଯୋଗୀ ଜୟମଙ୍ଗଳ ଅବିବାହିତ ଥିଲେ। ସମ୍ବଲପୁରର ସାଧନା ପତ୍ରିକାରେ ୧୯୨୨ରେ "ମୁଁ ଅବିବାହିତ ରହିଲି" ଶୀର୍ଷକ ପ୍ରବନ୍ଧ ପ୍ରକାଶ କରିଥିଲେ। ସେଥିରେ ସେ ଲେଖିଥିଲେ - ବିବାହ ଯୋଗୁଁ କର୍ମୀମାନେ ଅସହଯୋଗରେ ଯୋଗ ଦେଇ ପାରୁନାହାଁନ୍ତି। ଯେହେତୁ ସ୍ତ୍ରୀମାନେ ଅଶିକ୍ଷିତା ଓ ସେମାନେ ସ୍ୱାଧୀନତା ପାଇ ନାହାଁନ୍ତି, ସ୍ତ୍ରୀ ଓ ବିବାହ ଅସହଯୋଗ କର୍ମୀଙ୍କ କାର୍ଯ୍ୟରେ ପ୍ରଧାନ ଅନ୍ତରାୟ ହେଉଅଛି ବୋଲି ତାଙ୍କର ବିଶ୍ୱାସ। ଅତଏବ ଅସହଯୋଗ ସଂପର୍କ ରଖିଥିବା ଯାଏ ସେ ଅବିବାହିତ ରହିବେ ବୋଲି ପ୍ରତିଜ୍ଞା ପ୍ରକାଶ କରିଥିଲେ। ଏହା ଉପରେ

ଆଶା ସମ୍ବାଦପତ୍ରର ଅଗଷ୍ଟ ୧୪, ୧୯୨୨ ସଂଖ୍ୟାରେ ଏକ ମନ୍ତବ୍ୟ ପ୍ରକାଶ ପାଇଥିଲା। ସେଥିରେ ସୂଚିତ ହୋଇଥିଲା - ଭଲ ଲେଖା ଓ ଉନ୍ନତ ପ୍ରତିଜ୍ଞା ଏହା, ମାତ୍ର ବ୍ୟକ୍ତିଗତ ଜୀବନର କଥା ଏପରି ଭାବରେ ପ୍ରକାଶ କରିବାରେ କି ଲାଭ ଅଛି ? ଉତ୍ତେଜନା ବେଳେ ଏହିପରି କାର୍ଯ୍ୟ ଦ୍ୱାରା ଆତ୍ମପ୍ରସାଦ ଲାଭ ହୋଇପାରେ। ମାତ୍ର ସାମାଜିକ ଭାବରେ ଏହି ଆଦର୍ଶର ମୂଲ୍ୟ କଣ ? ନାମରେ ବ୍ରହ୍ମଚାରୀ ହୋଇ ନାନା ଅସ୍ୱାଭାବିକ ଦୋଷରେ ଲିପ୍ତ ହେବା ଲୋକ କଣ ନାହାଁନ୍ତି ? ଅନ୍ତତଃ ଏପରି କେତେ କଥା ତ ଜୟମଙ୍ଗଳ ରଥେ ନିଜେ ଅଂଗେ ନିଭାଇଥିବେ। ତେବେ ଏପରି ଆତ୍ମ-ଶ୍ଳାଘାର ବିଜ୍ଞାପନ କାହିଁକି ?

॥୩॥

ସଂସ୍କାରକ ଜୟମଙ୍ଗଳଙ୍କ ଜୀବନର ଏକ ଅବିସ୍ମରଣୀୟ ପର୍ଯ୍ୟାୟ ଥିଲା ୧୯୨୩ଠାରୁ ୧୯୨୮ ପର୍ଯ୍ୟନ୍ତ। ତାଙ୍କର ଉଗ୍ର ସଂସ୍କାରକ ଦୃଷ୍ଟିକୋଣ ସହିତ ବିଭିନ୍ନ ସଂଗଠନ ଓ ଗାନ୍ଧିବାଦୀ କର୍ମଧାରାର ପରିପ୍ରସାରରେ ସେ ଏହି ପର୍ଯ୍ୟାୟ ବିନିଯୋଗ କରିଥିଲେ। ୧୯୨୨ ମସିହା ଶେଷ ଆଡ଼କୁ ଜୟମଙ୍ଗଳ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଗାନ୍ଧିବାଦୀ କାର୍ଯ୍ୟକ୍ରମକୁ ଗଞ୍ଜାମରେ ପ୍ରସାରିତ କରିବାକୁ ଚେଷ୍ଟା କରିଥିଲେ। ୧୯୨୩ ଜାନୁଆରୀରେ ଗଞ୍ଜାମକୁ ମାନ୍ଦ୍ରାଜରେ ଲାଟ ବିଜେ କରୁଥିବାର ସମ୍ବାଦ ପାଇ ଏହା ଉପରେ କଠୋର ମନ୍ତବ୍ୟ ଦେଇଥିଲେ। ସେହି ପ୍ରସଙ୍ଗଟିକୁ ସେ ଉତ୍କଳ ଦୀପିକାକୁ ପଠାଇଥିଲେ। ସେଥିରେ ସେ ମତ ଦେଇଥିଲେ - ଲାଟଙ୍କର ଆଗମନ ନିଷ୍ଫଳ ହୋଇଛି। ସହଯୋଗୀମାନଙ୍କର ଆଦର ଅଭ୍ୟର୍ଥନା ଏବଂ ଅସହଯୋଗୀମାନଙ୍କର ହରତାଳ ବିଫଳ ହୋଇଛି। ଲାଟସାହେବ କାଠ ପ୍ରତିମା ପରି ଗଞ୍ଜାମ ପରିଦର୍ଶନ କରି ଫେରିଗଲେ କାହାର କିଛି ଉପକାର କରିଗଲେ ନାହିଁ। ଦେଶୀୟ ଲୋକମାନେ

ସେମାନଙ୍କର ପ୍ରକୃତ ଅଭାବ ଅସୁବିଧା କଥା ଜଣାଇ ପାରିଲେ ନାହିଁ ବା ସେ ବୁଝିବାକୁ ଚେଷ୍ଟା କଲେ ନାହିଁ। ଫଳତଃ ଲାଟ ଆଗମନ ଉପଲକ୍ଷେ ଯେଉଁ ଧନବ୍ୟୟ ହୋଇଲା ସେଥିରେ ଗୋଟିଏ ଅନ୍ଧରକ୍ଷିଣୀ କି ଅନାଥାଶ୍ରମ ବା କୁଷ୍ଠାଶ୍ରମ ପ୍ରତିଷ୍ଠା ହୋଇଥିଲେ ତାହା ଲାଟଙ୍କର ମନୁଷ୍ୟତାକୁ ସ୍ପର୍ଶ କରିଥାଆନ୍ତା। ତାଙ୍କ ମତ ଉପରେ ଦୀପିକାର ସଂପାଦକ ମନ୍ତବ୍ୟ ଦେଇ ଲେଖିଥିଲେ - ରଥ ମହାଶୟଙ୍କ ଆକ୍ଷେପ ଅମୂଳକ। ଲାଟ ମହାଶୟ ସମ୍ରାଟଙ୍କ ପ୍ରତିନିଧି ସ୍ଥାନୀୟ। ରାଜା ବା ପ୍ରତିନିଧିଙ୍କୁ ଭକ୍ତି ସମ୍ମାନ କରିବା, ମନପ୍ରାଣ ଢ଼ାଳି ସେମାନଙ୍କର ଆଦର ସମ୍ମାନ କରିବା, ଅତିଥି ପୂଜା କରିବା ହିନ୍ଦୁ ଭାରତର ଶୁଷ୍କ ଶିଷ୍ଟାଚାର ନୁହେଁ, ଶାସ୍ତ୍ର ସମ୍ମତ କର୍ତ୍ତବ୍ୟ। ପୁଣି ଲାଟ ସାହେବ ରାଜ ପ୍ରତିନିଧି ହେଲେ ତାଙ୍କର ପରିଷଦ ଅଛି। ସ୍ଥାନୀୟ କର୍ମଚାରୀ ଅଛନ୍ତି। ଦେଶର ସଭାସମିତି ଅଛି। ଦେଶର ଜନନାୟକ ଅଛନ୍ତି। ସେମାନଙ୍କ ମଧ୍ୟରେ ପ୍ରବଳ ମତଭେଦ ଅଛି। ସର୍ବୋପରି ରାଜକୀୟ ସ୍ୱାର୍ଥ ବିଚାର ଅଛି। ଏପରି ସ୍ଥଳେ ସେ ରାଜ ପ୍ରତିନିଧି ହେଲେ ସ୍ୱାଧୀନ ଭାବରେ କିଛି କରିପାରିବା, କହିଦେବା ତାଙ୍କ ପକ୍ଷରେ ସହଜ ନୁହେଁ। ସେ କ୍ଷମତାଶାଳୀ ହୋଇସୁଦ୍ଧା ଉଲ୍ଲିଖିତ କାରଣମାନଙ୍କର ବିଦ୍ୟମାନତା ଫଳରେ ମଧ୍ୟ କ୍ଷମତାହୀନ ବୋଲା ଯାଇପାରେ। ତଥାପି ତାଙ୍କର ଦେଶଭ୍ରମଣ ନିତ୍ୟାନ୍ତ ନିଷ୍ଫଳ ବୋଲା ଯାଇ ନପାରେ। ସେ ଶ୍ରୁତ ବିଷୟମାନ ଅବଶ୍ୟ ତଦନ୍ତ କରିବେ। ସେ ଗଞ୍ଜାମ ଭ୍ରମଣରେ ଅବଶ୍ୟ କିଛି ନା କିଛି ଅଭିଜ୍ଞତା ଅର୍ଜନ କରିଯାଇଛନ୍ତି ଯାହା କି ସମୟରେ ଗଂଜାମର କାର୍ଯ୍ୟରେ ଲାଗିପାରିବ। (ଉତ୍କଳ ଦୀପିକା, ୧୩ ଜାନୁଆରୀ ୧୯୨୩)

ଏହି ପ୍ରସଙ୍ଗରୁ ଦୀପିକାର ରାଜ କର୍ମଚାରୀ ପ୍ରତି ଆନୁଗତ୍ୟର ସୂଚନା ମିଳୁଥିବା ବେଳେ ଜୟମଙ୍ଗଳଙ୍କର ବିରୋଧୀ ମନ ଓ ସଂସ୍କାର ଦୃଷ୍ଟିର ପରିଚୟ ମିଳେ।

ରସଲକୋଣ୍ଡାରେ ୧୯୨୩ରେ ଅବସ୍ଥାନ କରି ଗାନ୍ଧିବାଦୀ କର୍ମଧାରାର ପ୍ରଚାର କରିବା ସଙ୍ଗେ ସଙ୍ଗେ ଗଞ୍ଜାମ ଜିଲା କଂଗ୍ରେସ କମିଟିର ସଂପାଦକ ହିସାବରେ ସେ କାର୍ଯ୍ୟ କରୁଥିଲେ। ସେ ମଧ୍ୟ ଏହି କାଳରେ ଉତ୍କଳ ଆର୍ଯ୍ୟ ସମାଜର ସଂପାଦକ ଭାବେ ରସଲକୋଣ୍ଡାଠାରେ କାର୍ଯ୍ୟ କରୁଥିଲେ। ଉତ୍କଳ ଆର୍ଯ୍ୟ ସମାଜର ଅଗ୍ରଗତି ଏବଂ କାର୍ଯ୍ୟମାଳା ସଂପର୍କରେ ସେ ଏକ ସୂଚନା ଆଶା ସମ୍ବାଦପତ୍ର ୧୯୨୩ ମାର୍ଚ୍ଚ ୧୨ରେ ପ୍ରକାଶ କରିଥିଲେ। ସେ କହିଥିଲେ - କି ସାମାଜିକ, କି ବୈଷୟିକ, କି ରାଜନୈତିକ ସକଳ ପ୍ରକାର ଉନ୍ନତିର ମୂଳଭିତ୍ତି ଧର୍ମ। ଧର୍ମ ସଂସ୍ଥାପନ ନ ହେଲେ ସମାଜ ସଂସ୍କାର କିମ୍ବା ଦେଶ ଉଦ୍ଧାର ହୋଇପାରେ ନାହିଁ। ଧର୍ମସାଧନର ପୁଣ୍ୟକ୍ଷେତ୍ର ଉତ୍କଳ ପ୍ରଦେଶରେ ଆର୍ଯ୍ୟସମାଜ ପ୍ରତିଷ୍ଠିତ ନ ଥିବାରୁ ସମାଜ ସଂସ୍କାର ସାଧନରେ ଆର୍ଯ୍ୟଧର୍ମ ମାନଙ୍କର ସମହଦୁଦ୍ୟମ ହୋଇପାରୁ ନାହିଁ। ଆମ୍ଭେମାନେ ଏହି କଥା ଉପଲବ୍ଧି କରି ପଞ୍ଜାବ ଆର୍ଯ୍ୟ ପ୍ରତିନିଧି ସଭାକୁ ଜଣାଇଥିଲୁ। ଶୀଘ୍ର ସମାଜ ସ୍ଥାପିତ ହେଲେ କିଛି କାଳ ନିମନ୍ତେ ଜଣେ ପ୍ରଚାରକ ପଠାଇ ତାହାର ଉନ୍ନତି ସାଧନ କରିବେ ବୋଲି ଉକ୍ତ ସଭାର ସଭାପତି ମହୋଦୟ ପ୍ରତିଶ୍ରୁତ ହେବାରୁ ୨୫/୨/ ୧୯୨୩ରେ ଉତ୍କଳ ଆର୍ଯ୍ୟ ସମାଜର ଅନ୍ତରଙ୍ଗ ସଭା ଗଠିତ ହୋଇ ଯାଇଅଛି। ସଭାର ଅଫିସ ଗଂଜାମ ଜିଲାର ରସଲକୋଣ୍ଡାରେ ରହିବ। ପ୍ରତ୍ୟେକ ସଭ୍ୟ ବାର୍ଷିକ ଆଠ ଅଣା ଚାନ୍ଦା ଦେଇ ନିମ୍ନଲିଖିତ ଉଦ୍ଦେଶ୍ୟ ଗ୍ରହଣ କରିବେ ବୋଲି ସଭା ସ୍ଥିର କରିଅଛନ୍ତି। ମହର୍ଷି ଦୟାନନ୍ଦ ସ୍ୱାମୀ ପ୍ରଦର୍ଶିତ ଆର୍ଯ୍ୟଧର୍ମକୁ ଭାରତୀୟ ପ୍ରାଚୀନ ବୈଦିକ ଧର୍ମ ଜ୍ଞାନ କରି ତାହାର ନୀତିନିୟମମାନ ସ୍ୱୟଂ ପାଳନ କରିବାକୁ ଏବଂ ଜନସମାଜରେ ପ୍ରାଣପଣେ ପ୍ରଚାର କରିବା ନିମନ୍ତେ ମୁଁ ଏତଦ୍ୱାରା ପ୍ରତିଜ୍ଞାବଦ୍ଧ ହେଉଅଛି।

ଉତ୍କଳ ସମ୍ମିଳନୀର ପ୍ରସ୍ତାବମାନଙ୍କରେ ଏପରି ବିଷୟ ଆସିବା ଉଚିତ ଯାହାଦ୍ୱାରା ଉତ୍କଳର ପ୍ରତିଗ୍ରାମରେ ବର୍ଷବ୍ୟାପୀ କାମ ହେବ -

ଏହାଥିଲା ଜୟମଙ୍ଗଳଙ୍କର ଉତ୍କଳ ସମ୍ମିଳନୀ ଉପରେ ଏକ ମନ୍ତବ୍ୟ। ସମ୍ମିଳନୀର ଇଚ୍ଛା ସ୍ୱରାଜ୍ୟ ଲାଭ ଏବଂ ଏହାର ପ୍ରାଣ ଆକାଙ୍କ୍ଷା ଦେଶମିଶ୍ରଣ। ଏହି ଉଭୟ କାର୍ଯ୍ୟ ସମ୍ମିଳନୀ କରିବା ଉଚିତ ବୋଲି ସେ ୧୯୨୩ରେ ଦାବି କରିଥିଲେ। ପୁଣି ଲୋକଙ୍କ ହାତକୁ ଆସିଥିବା ବୋର୍ଡ୍ ପଞ୍ଚାୟତ ଏବଂ ବ୍ୟବସ୍ଥା ସଭା ଘେନି ଉତ୍କଳବାସୀ ଯେ ଏକପ୍ରକାର ଶାସନାଧୀନ ହେବାର ସୁଖ ଓ ସୁବିଧା ଉପଭୋଗ କରିପାରନ୍ତି ତାହାର ବ୍ୟବସ୍ଥା କରିବା ଉତ୍କଳ ସମ୍ମିଳନୀର କାର୍ଯ୍ୟ ବୋଲି ସେ ଦୃଢ଼ ସ୍ୱରରେ କହିଥିଲେ। ଉତ୍କଳ ସମ୍ମିଳନୀର କାର୍ଯ୍ୟ ପନ୍ଥାକୁ ବ୍ୟାପକ କରିବାକୁ ସେ ଇଚ୍ଛା କରିଥିଲେ। ଉତ୍କଳରେ ବହୁତ ଦେବ ସଂପତ୍ତିର ଅପବ୍ୟବହାର ହୋଇଯାଉଥିବାରୁ ତାହାର ସଂରକ୍ଷଣଭାର ନେବାକୁ ଉତ୍କଳ ସମ୍ମିଳନୀ ଧର୍ମତଃ ବାଧ୍ୟ ବୋଲି ସେ ମତ ଦେଇଥିଲେ। ସେ କହିଥିଲେ ଉତ୍କଳ ସମ୍ମିଳନୀରେ ନାନା ଧର୍ମର ଲୋକେ ଥାଇପାରନ୍ତି। ତଥାପି ଗୋଟିଏ ସଂପତ୍ତି ନାଶ କରିବାକୁ କିଏ କହିବ ? ଆଜି ଯେ କଂଗ୍ରେସର ଗଠନଶୀଳ ପ୍ରଣାଳୀ ଘେନି ଉତ୍କଳରେ କାର୍ଯ୍ୟ କରିବାପାଇଁ ପ୍ରଶସ୍ତ କ୍ଷେତ୍ର ଅଛି ତାହା ଉତ୍କଳ ସମ୍ମିଳନୀ ଉପଲବ୍ଧି କରିବା ଉଚିତ। ଉତ୍କଳର ପଲ୍ଲୀ ସଂଗଠନ କାର୍ଯ୍ୟରେ ଭାଗବତ ମନ୍ଦିର ପରି ଆହୁରି କେତେକଥା ବିଶେଷ ସହାୟତା କରିପାରେ ସେ ଗୁଡ଼ିକ ଗଠନଶୀଳ କାର୍ଯ୍ୟପ୍ରଣାଳୀର ଅନ୍ତର୍ଭୁକ୍ତ ରହୁ। ସେଥିପାଇଁ ଉତ୍କଳ ସମ୍ମିଳନୀର ବିଷୟ ନିର୍ବାଚନ ବେଳେ ଏହି ଉପରୋକ୍ତ ବିଷୟ ପ୍ରତି ଦୃଷ୍ଟି ଦେବାକୁ ଅନୁରୋଧ କରିଥିଲେ। (ଆଶା, ମାର୍ଚ୍ଚ ୧୨, ୧୯୨୩)

ସଂସ୍କାରକର ଦୃଷ୍ଟିନେଇ ରଥ ୧୯୨୩ ଆରମ୍ଭରେ ଧନ ଅପବ୍ୟୟ ଉପରେ ଏକ ବିଶ୍ଳେଷଣାତ୍ମକ ଆଲୋଚନା ହିତୈଷିଣୀରେ ପ୍ରକାଶ କରିଥିଲେ। (ସମ୍ବଲପୁର ହିତୈଷିଣୀ, ୧୩ ଜାନୁଆରୀ, ୧୯୨୩) ସେଥିରେ ସେ ଲେଖିଥିଲେ "ଆମ ଦେଶରେ ନାଟତାମସା ଭୋଜିରେ

ଯେତେ ସବୁ ଧନ ବ୍ୟୟିତ ହୁଏ ସାଧାରଣ ହିତ କାମରେ ସେତିକି ଲାଗୁଥିଲେ ଏ ଦେଶ ସୁନା ପାଲଟି ଯାଆନ୍ତାଣି । ଇଂଲଣ୍ଡରେ ଦେଶର ଅଭାବ ଅସୁବିଧା ଦୂରପାଇଁ ସରକାର ଯେପରି ଧନ ସାରନ୍ତି, ଭାରତବର୍ଷରେ ସେପରି ନାହିଁ । ଅଥଚ ଆମ ଧନକୁବେରମାନେ ଧନର ଅପବ୍ୟୟ କରୁଛନ୍ତି । ଫଳରେ ଦିନକୁ ଦିନ ଏ ଦେଶର ଦୁଃଖ ଦୁର୍ବିପାକ ବଢ଼ିଯାଉଛି । ନିରାଶ୍ରୟ ହୋଇ ଅନ୍ଧବଧିର ଦୁଃଖୀ ଦରିଦ୍ର ସବୁ ସର୍ବଦା କାତର । ଧନି ଲୋକେ ଦେବଭକ୍ତି, ରାଜଭକ୍ତି ନାମରେ ଅଜସ୍ର ଧନ ସାରି କେବଳ ନିଜ ନିଜ ଇନ୍ଦ୍ରିୟ ତର୍ପଣରେ ଲାଗିଛନ୍ତି । ରାମନବମୀ ଉପଲକ୍ଷେ ଏକ ବଧିର ଆଶ୍ରମ ଅନୁଷ୍ଠିତ ହେଲା । ମାନ୍ଦ୍ରାଜ ଗଭର୍ଣ୍ଣର ଆଗମନ ଉପଲକ୍ଷେ ଏକ କୁଷ୍ଠାଶ୍ରମ ଖୋଲାଗଲା ବୋଲି ଶୁଣିଲେ ଚିନ୍ତାଶୀଳ ଲୋକର ପ୍ରାଣରେ ଯେ ଆନନ୍ଦ ଆସିବ, ବାଣ ପୋଡ଼ା ହେଲା ବୋଲି ଶୁଣିଲେ ତ କଦାପି ଆସିବ ନାହିଁ । ଏହା ମଧ୍ୟ ପ୍ରକୃତ ଭକ୍ତି ଓ ସମ୍ମାନ ଦେଖାଇବାର ନିଦର୍ଶନ ନୁହେଁ । ଧନି ଲୋକଙ୍କର ଅଜ୍ଞାନ କେବେ ଭାଙ୍ଗିବ ?'' ଏହି ପ୍ରସଙ୍ଗରୁ ରଥଙ୍କର ପ୍ରସାରିତ ସଂସ୍କାରକ ଦୃଷ୍ଟିକୋଣର ପୂର୍ଣ୍ଣ ପରିଚୟ ମିଳିପାରେ ।

ମଂଜୁଷା ରାଜା ଶ୍ରୀନିବାସ ରାଜମଣି ରାଜଦେବଙ୍କର ଆଦର୍ଶ ଶାସନ ବ୍ୟବସ୍ଥାକୁ ରଥ ସଂପୂର୍ଣ୍ଣ ପ୍ରଶଂସା କରୁଥିଲେ । ମଂଜୁଷା ରାଜା ଅସ୍ପୃଶ୍ୟ ଜାତୀୟ ଲୋକଙ୍କ ପାଇଁ ମଂଜୁଷାରେ ଏକ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ସେପରି କାର୍ଯ୍ୟର ଅନୁକରଣ କରିବା ପାଇଁ ଜୟମଙ୍ଗଳ ୧୯୨୩ରେ ଓଡ଼ିଶାର ସମସ୍ତ ରାଜା ମହାରାଜା ଓ ଜମିଦାରମାନଙ୍କୁ ଅନୁରୋଧ କରିଥିଲେ । ସେହି ସ୍ୱଦେଶ ପ୍ରେମିକ ରାଜା ମହୋଦୟଙ୍କୁ ନିଜ ରାଜ୍ୟରେ କପାଚଷ ଓ ଲୁଗାବୁଣାର ବ୍ୟବସ୍ଥା ରାଜ୍ୟ ମଧ୍ୟରେ ବିଶେଷ ଭାବରେ କରାଇବା ପାଇଁ ସେ ମଧ୍ୟ ଅନୁରୋଧ କରିଥିଲେ । (ସମ୍ବଲପୁର ହିତୈଷିଣୀ, ଜାନୁଆରୀ ୧୩, ୧୯୨୩) ୧୯୨୩ ମସିହାରେ ଜୟମଙ୍ଗଳଙ୍କର ଉଗ୍ର

ସମାଜ ସଂସ୍କାରକ ରୂପ ବିଶେଷ ଭାବରେ ପ୍ରକାଶିତ ହୋଇଥିଲା । ସମାଜ ସଂସ୍କାର ଏବଂ କଂଗ୍ରେସ ସଂଗଠନ ଉଭୟ କାର୍ଯ୍ୟ ହାତକୁ ନେଇ ସେ ଆଗେଇ ଚାଲିଥିଲେ । ବ୍ରହ୍ମପୁରର ପ୍ରସିଦ୍ଧ ଠାକୁରାଣୀ ପର୍ବ ମଧ୍ୟରେ ଥିବା ସମସ୍ତ କୁସଂସ୍କାର ଏବଂ ଆବର୍ଜନା ଭାବକୁ ତ୍ୟାଗ କରିବାକୁ ସେ ଲୋକମାନଙ୍କୁ ଅନୁରୋଧ କରିଥିଲେ । ଉତ୍କଳ ଦୀପିକା ସମ୍ବାଦପତ୍ରର ୨୧ ଏପ୍ରିଲ ୧୯୨୩ରେ ସେ ଏ ସଂପର୍କରେ ଏକ ସଂକ୍ଷିପ୍ତ ବିବରଣୀ ଉପସ୍ଥାପନ କରିଥିଲେ । ସେଥିରେ ସେ ଲେଖିଥିଲେ – ''ଗଞ୍ଜାମର ବିଭିନ୍ନ ସ୍ଥାନରେ ଏ ଉତ୍ସବ ହୋଇ ସାରିଲାଣି । ଆହୁରି କେତେ ସ୍ଥାନରେ ପୁଣି ଲାଗିଛି । ଏଥିରେ କେତେ ଯେ ଧନ ବ୍ୟୟିତ ହୁଏ ତାର କଳନା ନାହିଁ । ବର୍ଷକରେ ଏହି ୩/୪ ମାସ ବହୁତ ଠାକୁରାଣୀ ପର୍ବ ଦେଖିବ । ଏହା ଏକ ନିୟମ ହୋଇସାରିଲାଣି । ସାଧାରଣ ପରିତ ଏଥିରେ ନାଟ, ରୂପ, ବେଶ, ରଥ ଆଦି ଅଛି । ଏହାର ଆଉ ଏକ ବିଶେଷତ୍ୱ ଏହି ଯେ ଏଥିରେ ବାହାରିବା ବେଶ ଗୁଡ଼ିକ ବିଭତ୍ସ, କୁରୁଚିସଂପନ୍ନ, ପରସ୍ପର ହିଂସାଦ୍ୱେଷ ଭାବଦ୍ଦୀପକ ଏବଂ ଚରିତ୍ରଦ୍ୱେଷଣକାରୀ । ଯେ ଯାହାର ଅଭିଳାଷ ଘେନି କାମ କରିବା ପକ୍ଷେ ଠାକୁରାଣୀ ଏକ ସୁଯୋଗ ହୋଇପଡ଼େ । ଯାହା ଘେନି ଅନ୍ୟସମୟରେ ମାନହାନି ମକଦ୍ଦମାର ଭୟଥାଏ, ତାହା ଆଜି ଠାକୁରାଣୀ ପର୍ବର ଅଭିନବ ସୁବିଧାରେ ପର୍ଯ୍ୟବସିତ ହୁଏ । ଏପରିକି କେତେକ ଦୁର୍ବୃତ୍ତ ଲୋକ ସ୍ତ୍ରୀ ବେଶରେ କୁଳିନଘରେ ପଶି କୁଳସ୍ତ୍ରୀର ସତିତ୍ୱ ନେଇ ସୁଦ୍ଧା ଠାକୁରାଣୀ ପର୍ବ ଯୋଗୁଁ ରକ୍ଷା ପାଇଥିବା ଖବର ଶୁଣାଯାଏ । ଯେଉଁ ପର୍ବରେ ଏପରି ଶନାଚାର, ଅତ୍ୟାଚାର ଓ ବ୍ୟଭିଚାର ସଂଘଟତ ହୁଏ, ଦିନ ଆସିବ ଦିନେ ସେ ସବୁ ଧ୍ୱଂସପ୍ରାପ୍ତ ହେବ । କିନ୍ତୁ ବର୍ତ୍ତମାନ ସେ ସବୁ କୁତ୍ସିତ ବେଶ ପରିବର୍ତ୍ତେ ରାମାୟଣ, ମହାଭାରତାଦିର ସୁନ୍ଦର ବେଶ ଗୁଡ଼ିକ ପ୍ରଚଳିତ ହେବା ବ୍ୟବସ୍ଥା ସର୍ବତ୍ର ନେତାମାନେ କରି ସନ୍ତୁଷ୍ଟ ରହନ୍ତୁ ।'' ଏହି ବିବରଣୀ

ମାଧ୍ୟମରେ ଠାକୁରାଣୀ ପର୍ବ କାଳରେ ଘଟୁଥିବା କୁତ୍ସିତ କାର୍ଯ୍ୟକଳାପର ଅବସାନ ପାଇଁ ରଥ ଉଦ୍ୟମ କରିଥିଲେ।

୧୯୨୩ ଏପ୍ରିଲ ମାସ ୨ ତାରିଖରେ ବ୍ରହ୍ମପୁରରେ ଉତ୍କଳ ସମ୍ମିଳନୀ ମଣ୍ଡପରେ ସମାଜ ସଂସ୍କାରକ ସମ୍ମିଳନୀ କେ. କଲ୍ୟାଣସ୍ୱାମୀ ମହୋଦୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା। ଏଥିରେ ଅସ୍ପୃଶ୍ୟତା, ସ୍ତ୍ରୀଶିକ୍ଷା ଓ ସ୍ତ୍ରୀ ସ୍ୱାଧୀନତା, କନ୍ୟା ଓ ବରପଣ ଇତ୍ୟାଦି ବିଷୟ ନେଇ ଗୋଦାବରୀଶ ମିଶ୍ର, ଜଗବନ୍ଧୁ ସିଂହ, ରାମନାରାୟଣ ମିଶ୍ର, କଳ୍ପତରୁ ଦାସ, ବିଚିତ୍ରାନନ୍ଦ ଦାସ, ଭୁବନାନନ୍ଦ ଦାସ, ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ଭଦ୍ରବ୍ୟକ୍ତିମାନେ ଚିତାକର୍ଷକ ବକ୍ତୃତାମାନ ଦେଇଥିଲେ। ସମାଜ ସଂସ୍କାରକର ଅନ୍ୟାନ୍ୟ କାର୍ଯ୍ୟପ୍ରଣାଳୀ ପ୍ରଣୟନ ପାଇଁ ଏକ ସ୍ଥାୟୀ ସଭା ଗଠିତ ହେଲା। ଏଥିରେ ଶ୍ରୀବତ୍ସ ପଣ୍ଡା, ଲାଲମୋହନ ପଟ୍ଟନାୟକ, ଲିଙ୍ଗରାଜ ପାଣିଗ୍ରାହୀ ଏବଂ ଶରତ୍ ଚନ୍ଦ୍ର ମହାପାତ୍ରଙ୍କ ସହିତ ଜୟମଙ୍ଗଳ ରଥ ଜଣେ ସଦସ୍ୟ ଥିଲେ। (ଉତ୍କଳ ଦୀପିକା, ଏପ୍ରିଲ ୨୮, ୧୯୨୩)

ଗଂଜାମ ଜିଲା କଂଗ୍ରେସ କମିଟିର ସେକ୍ରେଟାରୀ ହିସାବରେ ରଥ ପୁରୀରୁ ପ୍ରକାଶିତ "ପୁରୀବାସୀ" ସମ୍ବାଦପତ୍ରରେ ୧୭ ଜୁଲାଇ ୧୯୨୩ରେ ଏକ ଲେଖା ପ୍ରକାଶ କରିଥିଲେ। ଏହି ବିଷୟର ନାମ ଥିଲା "ନାଗପୁର ଶାନ୍ତିଯୁଦ୍ଧ ଏବଂ ଉତ୍କଳ, ସ୍ୱରାଜ୍ୟ ପତାକା କଥା"। ଏହି ପ୍ରବନ୍ଧଟି ବ୍ରିଟିଶ ସରକାରଙ୍କ ଦୃଷ୍ଟିକୁ ଆସିବାରୁ ଏହାର ଇଂରାଜୀ ଅନୁବାଦ କରାଯାଇଥିଲା। ମୂଳଲେଖାଟି ଅଦ୍ୟାପି ଅନାବିଷ୍କୃତ। କିନ୍ତୁ ଏହାର ଇଂରାଜୀ ଅନୁବାଦକୁ ପଢ଼ି "ପୁରୀବାସୀ" ସମ୍ବାଦପତ୍ରକୁ ବାଜ୍ୟାପ୍ତ କରିବା ପାଇଁ ସରକାର ଉଦ୍ୟମ କରିଥିଲେ। (Board of Revenue Confidential Files, ACC. No. 81, File No. 39 of 1923, Orissa State Archives, Bhubaneswar, Orissa) ଏଠାରେ ସେହି ପ୍ରବନ୍ଧର

ଇଂରାଜୀ ଅନୁବାଦ ପାଠକମାନଙ୍କର ସୁବିଧା ପାଇଁ ଉପସ୍ଥାପନ କରାଯାଇଛି :

"Every civilised nation has a national flag in human society. It is only natural that all should bestow regards and honour upon it, being the emblem of all nationalities. God, Goddesses and holy places which the Nation adores are incorporated in the National Flag. It also carries with it the past, the present and future glorious deeds of a nation. Thus one is delighted when the national flag is hoisted. Since long it was not being hoisted in the sacred land of India. But today the sons of mother India are awaken on her call and are hoisting flags.

As the selfish British Government are obstructing in their hoisting, a furious non-violent war has broken out at Nagpur. Parties from various places of India are daily arriving at the battlefield. The Government are losing ground daily and the National flag is flying. Now the world realises that this Nation can no longer be subdued. The Government have lost thier sense. This is the proper time to wage the war more furiously and to keep up the glorious traditions of the nation with the National flag in hands. He who has once come in contact with the climate of India is being startled up on

hearing this war. He in whose veins Indian blood runs, is prepared to sacrifice for the cause of the country. Batches after batches are coming from Gujurat, the Punjab and various other parts of India to sacrifice themselves in the Nagpur jail in order to unfurl the National flag. This war will go on so long the Government will attempt to disregard the same. At last the Government will bow down and salute the flag from a distance, let the Government see the flag not only at Nagpur but in all other places wherever they cast their eyes upon. When Ravan was doomed to destruction he could see the shadow of Ram everywhere. When we are sanguine of the destruction of this Government we spread the Swaraj flag all around. This procession of Swaraj flag should be started in every town and villages on the Gandhi Day as Mahatma Gandhi went to jail after presenting this National flag in the hands of the sons of India. It is to be remembered that the next 18th July is fixed as a special day for the purpose. We should count the days and wait for the same Gandhi day. Let the Swaraj flag be unfurled in all the Ashram, Khadi-mandirs, libraries and one's own houses everyday from today till time to come. Let the brave sons of India at Nagpur go to jail by unfurling the National flag. Anybody and everybody will not do for

this sacrifice. Persons of calm and quiet nature, purity of character and patriotism are required. Those only will join who will bind displeasure.

Heroic sons are thus being mobilised to come forward in order to keep up the glory of Utkala in the great Mahabharat war for which any sum gladly contributed will be thankfully received. It is being arranged to send the first batch from Utkala to Nagpur on the 18th July. Two volunteers are already ready from Balasore for this purpose. A subscription of Rs. 15/- was at once collected when Rs. 2 only was required for one of them. When such excitement will prevail in all other districts it is to be understood that Utkala has life. When all these attempts are being noticed in Orissa inspite of the Criminal Law Amendment Act being in force many are sorry because of their absense in Ganjam. It is to be hoped Ganjam will not now lag behind Andhra, brethern kindled by bravery are joining. The Ganjam Oriyas are not cowards. All hope that they will lead to Utkala battalian.

ଏହି ପ୍ରସଙ୍ଗରୁ ଜୟମଙ୍ଗଳ ରଥଙ୍କର ନିର୍ଭିକ ସ୍ୱଭାବ, ତଥା ବ୍ରିଟିଶ ଉପନିବେଶ ବିରୋଧୀ ମନୋଭାବର ପରିଚୟ ମିଳେ ।

ଗଂଜାମ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ହିସାବରେ ଗଂଜାମ ଜିଲ୍ଲା ସମ୍ମିଳନୀ ପାଇଁ ସେ ୧୯୨୩ ନଭେମ୍ବର ମାସରେ ଆହ୍ୱାନ

ଦେଇଥିଲେ ଏବଂ ବେଲଗୁଣ୍ଠାଠାରେ ନଭେମ୍ବର ୧୦ ଏବଂ ୧୧ ତାରିଖମାନଙ୍କରେ ଏହି ସମ୍ମିଳନୀ ବସିଥିଲା । ଏଥିରେ ସମଗ୍ର ଉତ୍କଳରେ ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ ପାଳି ଦେଶମିଶ୍ରଣ ସକାଶେ ହରତାଳ କରିବା, ଅସ୍ପୃଶ୍ୟତା ନିବାରଣ ସକାଶେ କାର୍ଯ୍ୟ କରିବା, ଦେବୋତ୍ତର ସଂପତ୍ତି ରକ୍ଷା, ରସୁଲକୋଣ୍ଡା କାଠକରତ କଳ ଓ ମୋଟରଲରି ବିଷୟ ଏବଂ ଭଂଜ ସାହିତ୍ୟ ସଂପର୍କରେ ଆଲୋଚନା ହୋଇଥିଲା । ୧୯୨୩ ମସିହାରୁ ଜୟମଙ୍ଗଳ ଦଳିତମାନଙ୍କ ପାଇଁ ସମ୍ବେଦନଶୀଳ ହୋଇ ଉଠିଥିଲେ । ସେ ହାଡ଼ିମାନଙ୍କ ମଧ୍ୟରେ ଶିକ୍ଷା ପ୍ରସାର ପାଇଁ ଏହି ସମୟରେ ଉଦ୍ୟମ ଆରମ୍ଭ କରିଥିଲେ । ବ୍ରହ୍ମପୁର ହାଡ଼ିସାହି (ଲୋଚ୍ଛପଡ଼ା ରାସ୍ତା ନିକଟରେ) ଗୋଟିଏ ନୈଶ ବିଦ୍ୟାଳୟ ସେ ୧୯୨୩ ଅଗଷ୍ଟ ମାସରୁ ସୁନ୍ଦର ରୂପେ ପରିଚ୍ଛଳିତ କରିଥିଲେ । ତାଙ୍କରି ଉଦ୍ୟମ ଫଳରେ ୧୯୨୩ ଶେଷକୁ ୫ଜଣ ହାଡ଼ି ମଦ ନଖାଇ ନିଷ୍ଠାରେ ରହିଥିଲେ । କ୍ରମେ ହାଡ଼ିମାନଙ୍କ ମଧ୍ୟରେ ଗାନ୍ଧିବାଦୀ ଚିନ୍ତାଧାରା ମଧ୍ୟ ପ୍ରସାରିତ ହୋଇଥିଲା । (ଆଶା, ଡିସେମ୍ବର ୩, ୧୯୨୩)

୧୯୨୪ ଜାନୁଆରୀ ୧୮ ତାରିଖରେ ବ୍ରହ୍ମପୁର ସହରରେ ଗାନ୍ଧି ଦିବସ ପାଳିତ ହୋଇଥିଲା । ଏଥିରେ ଅନ୍ୟାନ୍ୟ ଜାତିଙ୍କ ସଂଗେ ହାଡ଼ିମାନେ ବଡ଼ ଉତ୍ସାହରେ ବାହାରିଥିଲେ । ହାଡ଼ି ପିଲାମାନଙ୍କୁ ସ୍ୱଦେଶୀ ପୋଷାକ ଦିଆଯାଇଥିଲା । ସେମାନେ ଧାଡ଼ି ଧାଡ଼ି ହୋଇ ସ୍ୱରାଜ୍ୟ ପତାକା ଧରି ନଗର ସଂକୀର୍ତ୍ତନରେ ଆଗରେ ଗୀତ ଗାଇ ଚ୍ଛଲୁଥିଲେ । ରାତ୍ର ୭ଟାଠାରୁ ପ୍ରାୟ ୧୦ଟା ପର୍ଯ୍ୟନ୍ତ ହାଡ଼ିସାହିରେ ସଭା ହୋଇଥିଲା । ହାଡ଼ିସାହି ସ୍କୁଲର ଅର୍ଦ୍ଧବାର୍ଷିକ ଉତ୍ସବ ହେତୁ ସଭା ସୁନ୍ଦର ହୋଇଥିଲା । ଜୟମଙ୍ଗଳ ସ୍କୁଲର ବିବରଣୀ ଜଣାଇଥିଲେ । ଜୟମଙ୍ଗଳଙ୍କ ପ୍ରେରଣାରେ ଅନେକ ହାଡ଼ି ମହିଳା (ଯଥା ସିତା) ଏଥିରେ ଯୋଗ ଦେଇଥିଲେ । ମଦ, ଗୋରୁ, ଘୁଷୁରି ମାଂସ ଛାଡ଼ିବା ପରେ ହାଡ଼ି ସମାଜର ନାନାବିଧ କୁସଂସ୍କାର ଦୂର କରିବାକୁ

ଅଣ୍ଟାଭିଡି ଠିଆ ହୋଇଥିବାରୁ ରଥ କେତେ ହାଡ଼ିଙ୍କୁ ପ୍ରଶଂସା କରିଥିଲେ। (ଆଶା, ଜାନୁଆରୀ ୨୧, ୧୯୨୪)

ଗଂଜାମ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଜୟମଙ୍ଗଳ ରଥ ସୋରଲରେ ଫେବୃଆରୀ ୨୮ ୧୯୨୪ରେ ଗୋଟିଏ ସଭା କରିଥିଲେ। ସ୍ଥାନୀୟ କେଉଟମାନେ ଗାନ୍ଧିମାସ ଉପଲକ୍ଷେ ମହାତ୍ମାଙ୍କ ପୂଜା କରୁଥିବା ବେଳେ ଏହାଙ୍କୁ ପାଇ କୃତାର୍ଥ ହେଲେ ବୋଲି କେହି କେହି କହିବା ପରେ ଜଣେ ପ୍ରଶ୍ନ କରିଥିଲେ ଯେ ଦିନକୁ ଦିନ ଲୋକେ ଗରୀବ ହୋଇ ମରିଯାଉଥିବାର ଦେଖୁ ଦେଖୁ ସ୍ୱୟଂ ଭଗବାନ ଅବତାର ଗାନ୍ଧି ଲୋକଙ୍କ ପୂଜା ଗ୍ରହଣ କରି ସେମାନଙ୍କୁ ଉଦ୍ଧାର କରୁନାହାଁନ୍ତି କାହିଁକି ? ଜୟମଙ୍ଗଳ ସଂସ୍କାରକର ଦୃଷ୍ଟିରେ କହିଥିଲେ - "ତୁମ୍ଭେମାନେ ଯେଉଁ ପୂଜା କରୁଛ, ସେଥିରେ ଗାନ୍ଧି ସନ୍ତୁଷ୍ଟ ନୁହଁନ୍ତି। ତାଙ୍କର ପ୍ରକୃତ ପୂଜା ଅରଟ ଧରି ସୂତା କାଟିବା। ଏହା କଲେ ଲୋକଙ୍କର ଗରୀବ ଅବସ୍ଥା ଆପେ ଆପେ ଘୁଞ୍ଚିଯିବ। ଗାନ୍ଧି ନାମରେ ହାତ ଯୋଡ଼ି ବସିଲେ କିଛି ଫଳ ନାହିଁ କି ତାଙ୍କ ପାଇଁ ଉତ୍ସବ ଭୋଜିଭାତରେ ଧନ ବ୍ୟୟ କଲେ କିଛି ଲାଭ ନାହିଁ। ସେ ଯେଉଁ ବୁଦ୍ଧି ଦେଇଛନ୍ତି ତା ଅନୁସାରେ କେବଳ କାମ କରିବାକୁ ହେବ। ସେ ମନୁଷ୍ୟ, ସୁତରାଂ ଉଚିତ କାମ ଲୋଡ଼ା କରୁଛନ୍ତି।" (ଆଶା, ମାର୍ଚ୍ଚ ୩, ୧୯୨୪) ଅରଟ ଓ ସ୍ୱଦେଶୀ ଖଦୀର ଏପରି ପ୍ରଚାର କରି ଜୟମଙ୍ଗଳ ଗାନ୍ଧିପୂଜାକୁ ଘୋର ସମାଲୋଚନା କରିଥିଲେ। ଗାନ୍ଧି ଠାକୁରାଣୀ ପୂଜା ଗଂଜାମରେ ୧୯୨୪ରେ ପ୍ରବଳ ହେବାରୁ ଏହାର ପ୍ରତିବାଦ କରି ସେ ସମ୍ବାଦପତ୍ରରେ ଅନେକ କଥା ଲେଖିଥିଲେ। ଏପରି ଅନ୍ଧ ବିଶ୍ୱାସ ଧ୍ୱଂସ ନହେଲେ କଂଗ୍ରେସର ଗଠନ କାର୍ଯ୍ୟରେ ଲୋକେ ମନ ଦେବେ ନାହିଁ ବୋଲି ସେ ଆଶା ସମ୍ବାଦପତ୍ର ମାର୍ଚ୍ଚ ୩୧, ୧୯୨୪ ସଂଖ୍ୟାରେ ମତ ଦେଇଥିଲେ।

ଗଂଜାମ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ହିସାବରେ ସେ ଇଚ୍ଛାପୁରରୁ ନଭେମ୍ବର ୧୭ ଏବଂ ୧୮, ୧୯୨୩ରେ ଗଂଜାମରେ ହୋଇଥିବା ଝଡ଼ତୋଫାନର ଏକ ଦୁଃଖଦାୟକ ବିବରଣୀ ଦେଇ ଲୋକମାନଙ୍କୁ ସାହାଯ୍ୟ ସହଯୋଗ କରିବା ପାଇଁ ନିବେଦନ କରିଥିଲେ। ସେ ଉତ୍କଳ ଦୀପିକା ଡିସେମ୍ବର ୧୫, ୧୯୨୩ରେ ଯାହା ଲେଖିଥିଲେ ସେଥିରୁ ତାଙ୍କର ସ୍ୱେଚ୍ଛାସେବକ ପ୍ରବୃତ୍ତିର ଅସଲ ପରିଚୟ ମିଳେ। ଅନ୍ନବସ୍ତ୍ର ଓ ବାସହୀନ, ରୁଗ୍ଣ ଓ ଅସହାୟ ଲୋକମାନଙ୍କୁ ଏହି ବିପଦରୁ ଉଦ୍ଧାର କରିବା ପାଇଁ ସେ ନିବେଦନ କରିଥିଲେ। ଝଡ଼ତୋଫାନ ଯୋଗୁଁ ଗଂଜାମ ଲୋକମାନଙ୍କର ୧୯୨୩ରେ ଯେଉଁ ଦାରୁଣ କ୍ଷତି ଘଟିଥିଲା ସେଥିରେ ଜୟମଙ୍ଗଳ ବ୍ୟଥିତ ହୋଇଥିଲେ। ବିପନ୍ନ ଲୋକମାନଙ୍କୁ ରିଲିଫ୍ ଯୋଗାଇ ଦେବାପାଇଁ ସରକାରୀ ଉଦ୍ୟମ ଯେ ଏକାନ୍ତ ଆବଶ୍ୟକ ସେ ବାରଂବାର ସମ୍ବାଦପତ୍ରମାନଙ୍କରେ ପ୍ରକାଶ କରିଥିଲେ। ବ୍ରହ୍ମପୁରରେ ଉତ୍କଳ ସ୍ୱରାଜ୍ୟାଶ୍ରମରୁ ସେ ବାରଂବାର ଖବରକାଗଜମାନଙ୍କରେ ଏହି ଗଂଜାମ ବନ୍ୟା ଦୁର୍ଗତି ଓ ତହିଁର ପ୍ରତିକାର ପ୍ରସଙ୍ଗ ଆଗତ କରି ତାଙ୍କର ସଂସ୍କାର ପ୍ରବୃତ୍ତିର ପରିଚୟ ଦେଇଥିଲେ।

୧୯୨୪ରେ ଜୟମଙ୍ଗଳ ଓଡ଼ିଶା ପ୍ରଦେଶ ଗଠନ ଏବଂ ଓଡ଼ିଶା ଦେଶମିଶ୍ରଣ ସଂପର୍କରେ ଆଲୋଡିତ ହୋଇ ନାନା ପ୍ରକାର ମତ ଓ ମନ୍ତବ୍ୟ ଖବରକାଗଜମାନଙ୍କରେ ପ୍ରକାଶ କରିଥିଲେ। ଫେବୃଆରୀ ୧୦, ୧୯୨୪ରେ ତାଙ୍କର ଏକ ମୁଦ୍ରିତ ବାର୍ତ୍ତା ଏହି ସଂପର୍କରେ ବ୍ରହ୍ମପୁର ସହରରେ ପ୍ରଚାରିତ ହୋଇଥିଲା। ତାହା ଉତ୍କଳ ଦୀପିକାରେ ଫେବୃଆରୀ ୧୬, ୧୯୨୪ରେ ପ୍ରକାଶିତ ହୋଇଥିଲା। ସେଥିରେ ସେ ଲେଖିଥିଲେ - ପ୍ରାଚୀନ ଗୌରବଶାଳିନୀ, ଇତିହାସପ୍ରସିଦ୍ଧ ଉତ୍କଳ ଦେଶ ଆଜି ଆଉ ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତୃତ ନୁହେଁ। ଭିନ୍ନ ଭିନ୍ନ ପ୍ରଦେଶରେ

ତାହାର ବିଭିନ୍ନ ଅଂଗ ପଡ଼ି ରହିଥିବାରୁ କୌଣସି ଦିଗରେ ସେ ଏବେ ଉନ୍ନତି ଲାଭ କରିପାରୁନାହିଁ। ଓଡ଼ିଆର ଏ ବିପତ୍ତି ବେଳେ ପ୍ରତିବେଶୀ ଜାତି ସହାନୁଭୂତି ଦେବେ କଣ, ଗଂଜାମ ପରି ଏକ ଓଡ଼ିଆ ଜିଲ୍ଲାରେ ଆନ୍ଧ୍ରର ଦାବି ଉପସ୍ଥାପିତ କରାଯାଉଛି। ଆଜି ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀ କେବଳ ଏହି ଆନ୍ଦୋଳନ ଚଳାଇ ଆସୁଅଛି। କିନ୍ତୁ ଏ ଆନ୍ଦୋଳନ ଭାରତବ୍ୟାପୀ ହୋଇପାରି ନଥିଲା। ମହାତ୍ମାଗାନ୍ଧି ଗଂଜାମରେ ଯେଉଁଦିନ ଶୁଭ ପଦାର୍ପଣ କଲେ ସେଦିନ ସେ କେବଳ ଏହି ଆନ୍ଦୋଳନ ଦେଖି ସମଗ୍ର ଭାରତକୁ ଏହାର ବାର୍ତ୍ତା ଶୁଣାଇଥିଲେ। ତାଙ୍କର ବାଣୀ ଆଜି ନିଖିଳ ଭାରତ ଜାତୀୟ ମହାସମିତି ଶୁଣିପାରିଛି। ଏବେ ଆନ୍ଧ୍ରୋତ୍କଳ ସୀମା ନିର୍ଦ୍ଧାରଣ ତାହାର ଏକ କର୍ତ୍ତବ୍ୟ ହୋଇ ପଡ଼ିଅଛି। ଆଗାମୀ ମାସରେ ଏହାର ମିମାଂଶା କରିବାକୁ ବ୍ରହ୍ମପୁରରେ ସି. ରାଜଗୋପାଳାଚାରୀ, ନୀଳକଣ୍ଠ ଦାସ, ନିରଞ୍ଜନ ପଟ୍ଟନାୟକ, ପଟ୍ଟାଭି ସିତାରାମାୟା ଏବଂ ଭେଙ୍କଟ ସିତା ନାରାୟଣଙ୍କୁ ନେଇ ଏକ କମିଟି ବସୁଛି। ଏଣେ ଭାରତ ବ୍ୟବସ୍ଥା ସଭାରେ ଉତ୍କଳ ପ୍ରଦେଶ ଗଠନ ସଂପର୍କରେ ତୀବ୍ର ଆନ୍ଦୋଳନ ଚାଲିବା ଫଳରେ ସରକାର ପକ୍ଷରୁ ମଧ ମିମାଂଶା ହେବାର କଥା ଜଣାଯାଉଛି। ଏତିକିବେଳେ ଓଡ଼ିଆ ଜାତି ଜାଗ୍ରତ ହେବାକୁ ହେବ। ଅନ୍ତତଃ ଏହି ଦୁଇମାସ ସମସ୍ତେ ସବୁ ପ୍ରକାର କାମଛାଡ଼ି କେବଳ ଓଡ଼ିଆର ଏକ ଜୀବନମରଣ ସମସ୍ୟା ସମାଧାନରେ ପ୍ରବୃତ୍ତ ହେବାକୁ ହେବ। ମନେ ରଖିବାକୁ ହେବ ଓଡ଼ିଆର ଇତିହାସରେ ଏହା ଏକ ଅପୂର୍ବ ସମୟ। ସହଯୋଗୀ, ଅସହଯୋଗୀ, ଜମିଦାର, ରୟତ୍, ମହାଜନ, ମହନ୍ତ, ଓକିଲ, ଶିକ୍ଷକ ଛାତ୍ର ସମସ୍ତେ ଏ ସମୟରେ ଏକ ମନ ହୋଇ ଯୋଗ ନ ଦେଲେ ଓଡ଼ିଆ ଜାତିର ଦୁର୍ଗତି କହିଲେ ସରିବ ନାହିଁ। ଭବିଷ୍ୟତ ବଂଶଧରମାନେ ଆମ୍ଭର ନିନ୍ଦା ରଟନା କରିବେ। ଭଗବାନ ଅଭିଶାପ ଦେବେ। ପ୍ରାଣ ପଣ କରି ଆଜି ସମସ୍ତେ

ଆସ ଭାଇ। ଜନନୀ ଜନ୍ମଭୂମିର କାର୍ଯ୍ୟ କରିବା। ନିଜେ କାର୍ଯ୍ୟ ନ କଲେ କିଏ ସହାୟ ହେବ? ବଂଗ ବିଚ୍ଛେଦରେ ବଂଗାଳୀ ଭାଇମାନେ ସେଦିନ କି ଆନ୍ଦୋଳନ ଚଳାଇଥିଲେ ମନେ ପକାଇ ନିଜ ଆଡ଼େ ଦୃଷ୍ଟିଦେଲେ ଲଜ୍ଜାବୋଧ କରିବାକୁ ହୁଏ। ସମସ୍ତ ଦୁଃଖ ଶୋଚନା ପରିହାର କରି ଆଜି ଆସ ପବିତ୍ର ଦିବସରେ ସମ୍ମିଳିତ ହେବା।

୧୯୨୪ରେ ଉତ୍କଳ ପ୍ରଦେଶ ଗଠନ ଆନ୍ଦୋଳନ ଉପରେ ଅଧିକ ଗୁରୁତ୍ୱ ଦେଇ ତାଙ୍କର ଚିନ୍ତାଧାରା ପ୍ରସାରିତ କରିଥିଲେ। ଏ ସଂକ୍ରାନ୍ତରେ ତାଙ୍କର ସୁଚିନ୍ତିତ ମତ ଆଶା ସମ୍ବାଦପତ୍ରରେ ମାର୍ଚ୍ଚ ୧୭, ୧୯୨୪ ସଂଖ୍ୟାରେ ଯେପରି ପ୍ରକାଶିତ ହୋଇଥିଲା, ତାହା ଏଠାରେ ପ୍ରଣିଧାନଯୋଗ୍ୟ – "ଦେଶ ମିଶ୍ରଣ ଓ ଆନ୍ଧ୍ରୋତ୍କଳ ସୀମା ନିର୍ଦ୍ଧାରଣ ନାମରେ ସମୟେ ସମୟେ ଯେ ଚହଲ ପଡ଼େ, ତାହା ଯେ କୌଣସି ଜୀବିତ ଅଥଚ ବିଚ୍ଛେଦ ଦଶାପ୍ରାପ୍ତ ଜାତିପକ୍ଷେ ଏକାନ୍ତ ସ୍ୱାଭାବିକ। ଉତ୍କଳ ବିଚ୍ଛେଦରେ ଉତ୍କଳ ପ୍ରଦେଶ ଗଠନର ଆନ୍ଦୋଳନ ସୃଷ୍ଟି। କିନ୍ତୁ ଯେତେବେଳେ କେବଳ ଗଂଜାମ ପରି କେତେ ଗୋଟି ଜିଲ୍ଲାର ଓଡ଼ିଆ ହୃଦୟବେଦନା ଅନୁଭବ କରନ୍ତି ସେତେବେଳେ ଏ ଆନ୍ଦୋଳନ ଦେଶ ମିଶ୍ରଣ ଆଖ୍ୟାଲାଭ କରେ ଏବଂ ଗଂଜାମରେ ଯେତେବେଳେ କଂଗ୍ରେସ ପକ୍ଷରୁ ଆନ୍ଧ୍ର ଓ ଉତ୍କଳ ଏପରି ଦୁଇଟି କମିଟି ରହି କାର୍ଯ୍ୟରେ ବିଶୃଙ୍ଖଳା ଉପସ୍ଥିତ ରହେ, ସେତେବେଳେ ସେଠାରେ ଅତି ଶୀଘ୍ର ଆନ୍ଧ୍ରୋତ୍କଳ ସୀମା ନିର୍ଦ୍ଧାରଣ ଆବଶ୍ୟକ ହୋଇପଡ଼େ। ଉଭୟ କ୍ଷେତ୍ରରେ ପ୍ରତ୍ୟକ୍ଷ ଭାବେ କେବଳ ଗଂଜାମ ଛଡ଼ା ଉତ୍କଳର ଅନ୍ୟାନ୍ୟ ଜିଲ୍ଲା ଏ ପର୍ଯ୍ୟନ୍ତ ଆନ୍ଦୋଳନରେ ସଂପୂର୍ଣ୍ଣ ରୂପେ ଲାଗି ନ ଥିବାରୁ ଭାରତର ଜନସାଧାରଣ ତଥା ଭାରତ ସରକାର ଉତ୍କଳ ପ୍ରଦେଶଗଠନର ଆବଶ୍ୟକତା ଓ ଗୁରୁତ୍ୱ ଅନୁଭବ କରିପାରୁନାହାନ୍ତି। ଭୌତିକ ଆନ୍ଦୋଳନ ଅଭାବ ହେଲେ ଯେ ସତ୍ୟକୁ ଭୁଲିଯାଇ ତାଠାରୁ ଦୂରରେ ରହିବାକୁ ହୁଏ, ଏହା ଅବଶ୍ୟ

ମାନବ ଜାତି ପକ୍ଷରେ ଘୋର ଅକଲ୍ୟାଣର କଥା। ଆମ୍ଭେମାନେ ତଥାପି କେବଳ ଉତ୍କଳ ସମ୍ମିଳନୀ କିମ୍ବା ଅନ୍ୟ କୌଣସି ସଭାସମିତିରେ ଗୋଟିଏ ନିର୍ଦ୍ଧାରଣ କରି ଦେଲେ ଯେ ତାହା ଏ ପଥଭ୍ରଷ୍ଟ, ସତ୍ୟଭ୍ରଷ୍ଟ ଦେଶରେ ପ୍ରତ୍ୟେକଙ୍କୁ ଜାଗ୍ରତ କରାଇପାରିବ, ଏହା ନୁହେଁ। ଶାନ୍ତିମୂଳକ ହେଉ କିମ୍ବା ଅଶାନ୍ତିମୂଳକ ହେଉ କେତେଗୋଟି ଘଟଣା ଘେନି ଆନ୍ଦୋଳନ ଦେଶବାସୀଙ୍କ ସ୍ଥୂଳ ଶରୀର ପର୍ଯ୍ୟନ୍ତ ପହଞ୍ଚିବାକୁ ହେବ। ଦେଶବାସୀଙ୍କୁ ନେଇ ତ କଂଗ୍ରେସ କିମ୍ବା ସରକାର। ଆଜି କଂଗ୍ରେସ ତଥା ସରକାର ଓଡ଼ିଆ ଆନ୍ଦୋଳନକୁ ଭଲ ରୂପେ ବୁଝିପାରୁ ନାହାଁନ୍ତି। ଏହା ଆମ୍ଭମାନଙ୍କ ଦୋଷ - ଦେଶବାସୀଙ୍କ ଦୋଷ।"

ରଥ ଅହିଂସା ଓ ଶାନ୍ତିମୂଳକ ଉପାୟର ପକ୍ଷପାତୀ ଥିବାରୁ ସେତେବେଳେ ସେହି ଉପାୟରେ ଓଡ଼ିଆ ଆନ୍ଦୋଳନ ଚଳାଇବା ପାଇଁ ଇଚ୍ଛା କରିଥିଲେ ଓ ସମଗ୍ର ଉତ୍କଳକୁ ଏଥିପାଇଁ ଆହ୍ୱାନ କରିଥିଲେ। ଉତ୍କଳ ପ୍ରଦେଶ ଗଠନ ଓ ଓଡ଼ିଆ ଜାତିର ଲକ୍ଷ୍ୟସାଧନ ପଥରେ ଯଦି କୌଣସି ପଦ କିମ୍ବା ଅନୁଷ୍ଠାନ କୌଣସି ବାଧା ଦିଏ ତାହାକୁ ସଂସ୍କାର ନ ହେଲେ ସଂହାର କରିବାକୁ ଓଡ଼ିଆମାନେ ଅଣ୍ଟାଭିଡ଼ି ବାହାରନ୍ତୁ ବୋଲି ସେ ଘୋଷଣା କରିଥିଲେ। କିନ୍ତୁ, ଯେହେତୁ ନିଶ୍ଚେଷ୍ଟ ଓ ସ୍ଥିର ଜାତିକୁ କଦାପି ବାଧାର ସମ୍ମୁଖୀନ ହେବାକୁ ପଡ଼େ ନାହିଁ, ସେହେତୁ ପ୍ରଥମେ ଓଡ଼ିଆ ଜାତି ଅଗ୍ରସର ହେବାକୁ ହେବ ବୋଲି ସେ ମତ ଦେଇଥିଲେ।

୧୯୨୪ରେ କେତେକ ସାମାଜିକ ପ୍ରଶ୍ନ ଉପରେ ଗୁରୁତ୍ୱ ଦେଇ ସେ ସଂସ୍କାର ପ୍ରବଣ ମନଭାବର ପରିଚୟ ଦେଇଥିଲେ। ସେତେବେଳେ ଅସ୍ପୃଶ୍ୟତା (ଦଳିତ ସମସ୍ୟା) ଏକ ବଡ଼ ସମସ୍ୟା ଥିଲା। କିନ୍ତୁ ନିଜ ଜାତିର ବା ଦଳିତ ଜାତିର ଲୋକ ଖ୍ରୀଷ୍ଟାଆନ ହେଲେ ତାହାର ମୂଲ୍ୟ କିପରି ବଢ଼ି ଯାଉଥିଲା ସେ ସଂପର୍କରେ ବହୁ ଆଲୋଚନା କରିଥିଲେ। ୧୯୨୪ ମାର୍ଚ୍ଚ

୩ ତାରିଖରେ ଆଶା ସମ୍ବାଦପତ୍ରରେ ସେ ଏ ସଂପର୍କରେ ଏକ ଆଲୋଚନା ପ୍ରକାଶ କରି ଲେଖିଥିଲେ -

"ରୋମାନ୍ କେଥୋଲିକ ଦରଜା ଆସିକାରେ ଭାଙ୍ଗିପଡୁ ଥିବାରୁ ଏବଂ ବ୍ରହ୍ମପୁରରେ ଶିଆଳି ମାଡ଼ି ଯାଉଥିବାର ଦେଖି କେହି କେହି ମନେ କରୁଥିବେ, ଗଂଜାମରୁ ରୋମାନ୍ କେଥୋଲିକ୍ ମିଶନ୍ ଏକାବେଳକେ ଉଠି ଯାଇଅଛି । କିନ୍ତୁ ସୋରଡାଠାରୁ ମାଳ ଭିତରେ ପଶି ଦେଖିଲେ ଜଣାଯିବ ତାହାର କାର୍ଯ୍ୟ କି ଦ୍ରୂତ ଗତିରେ ଚଳିଛି । ଆମ୍ଭର ଯେଉଁ ଭାଇମାନଙ୍କୁ ଅଛୁଆଁ ମୂର୍ଖ କରି ଆମ୍ଭେମାନେ ପକାଇ ରଖିଛୁ, ସେମାନଙ୍କୁ ନେଇ ଖ୍ରୀଷ୍ଟାନ୍ ସମାଜ ଅନ୍ତର୍ଭୁକ୍ତ କରି ଆମ୍ଭମାନଙ୍କ ନମସ୍ୟ ଶ୍ରେଣୀରେ ପରିଣତ କରାଇବା ସେମାନଙ୍କର ବର୍ତ୍ତମାନ କାର୍ଯ୍ୟ ହୋଇଅଛି । ସେମାନଙ୍କ ଶିକ୍ଷା, ଦୀକ୍ଷା, ସଭ୍ୟତା ନିମନ୍ତେ ଏତେ ଧନମନ ଲଗାଉଛନ୍ତି ଯେ ଛ ମାସ ମଧ୍ୟରେ ସେମାନେ ଆଉ ଚିହ୍ନି ହେଉ ନାହାନ୍ତି । ସେପରି ଅନେକ କନ୍ଧ, ସଉରା, ହାଡ଼ି, ପାଣ, ଦଣ୍ଡାସିଙ୍କୁ ପ୍ରତ୍ୟହ ବ୍ରାହ୍ମଣମାନେ ଜାଣି ନଜାଣି ନମସ୍କାର କରୁଅଛନ୍ତି । ଏମାନଙ୍କୁ ଧର୍ମାନ୍ତର ନକରି ଯଦି ଏହି କାର୍ଯ୍ୟରେ ପ୍ରବୃତ୍ତ ହୋଇଥାଆନ୍ତେ ଆମ୍ଭେମାନେ ରୋମାନ୍ କେଥୋଲିକ୍ ମିସନ୍‌କୁ ଆମ୍ଭ ହୃଦୟର କୃତଜ୍ଞତା ଜଣାଇଥାଆନ୍ତୁ । କିନ୍ତୁ ଖ୍ରୀଷ୍ଟାନ୍ ହେବା ସଙ୍ଗେ ସଙ୍ଗେ ଯେ ଏମାନେ ନିଜ ଜାତି ତଥା ଦେଶର ମମତା ଏକାବେଳକେ ହରାଇ ବସନ୍ତି ଏହା ଦେଖି ପ୍ରାଣରେ ଆଘାତ ଲାଗୁଛି । ଖ୍ରୀଷ୍ଟାନ୍ ମିଶନର କିମ୍ବା ଆମ୍ଭମାନଙ୍କର କନ୍ଧ ସଉରା ହାଡ଼ି ପାଣ ଦଣ୍ଡାସି ଭାଇମାନଙ୍କର ଏଥିରେ କୌଣସି ପ୍ରକାର ଦୋଷ ନାହିଁ । ଖ୍ରୀଷ୍ଟାନ୍ ମିଶନ୍ ତାର କର୍ତ୍ତବ୍ୟ ଯାହା ତାହା କରୁଛି ଏବଂ ପତିତ ହୋଇ ରହିବାକୁ କାହାକୁ ସୁଖ ଲାଗେ ? ଯାହାଠାରୁ ଏ ଅଛୁଆଁ ଲୋକେ ସେହି ଆଦର ପାଉଅଛନ୍ତି ତାର ବଶବର୍ତ୍ତୀ ହୋଇ ରହୁଛନ୍ତି । ଖ୍ରୀଷ୍ଟାନ୍ ମିଶନ୍‌କୁ ବୈଦେଶିକ ବୋଲି କି କୂଟରାଜନୀତି

ଦ୍ୱାରା ପରିଚାଳିତ ବୋଲି ସେ ଏଥିପ୍ରତି ଭ୍ରୂକ୍ଷେପ ନ କରି ନିଜ ଲକ୍ଷ୍ୟସାଧନରେ ପ୍ରବୃତ୍ତ। ରୋମାନ୍ କେଥୋଲିକ୍ ମିଶନ୍ ମାଳ ଭିତରେ ପଶି ହିନ୍ଦୁଙ୍କୁ ଖ୍ରୀଷ୍ଟାନ୍ କରିବାରେ ଏପରି ଭାବେ ଲାଗିଛନ୍ତି ଯେ ସୋରଡାଠାରେ ଯେଉଁ ସ୍କୁଲଟି ରଖିଅଛନ୍ତି ତାହା ମଧ୍ୟ ବର୍ତ୍ତମାନ ପରିଚାଳନା କରିବା ଅନାବଶ୍ୟକ ମନେ କରୁଥିବା ସେଦିନ ଶୁଣାଯାଉଥିଲା। ଆମ୍ଭେମାନେ ଅଛୁଆଁ ଦୋଷ ନ ଘୁଞ୍ଚାଇଲେ କଣ ହେଲା, ଖ୍ରୀଷ୍ଟାନ୍ ହେଲେ ଅଛୁଆଁ ଗଲା। କିନ୍ତୁ ଏଥିରେ ଯେ କି ଭୟାନକ କ୍ଷତି ହେଉଛି ଆମ୍ଭ ଜାତିର ସେଥିପ୍ରତି ଦୃଷ୍ଟିଦେବା ଆମ୍ଭମାନଙ୍କର କର୍ତ୍ତବ୍ୟ।" ଏହି ଆଲୋଚନାରେ ହିନ୍ଦୁ ଧର୍ମ ଓ ସଂସ୍କୃତି ମଧ୍ୟରେ ଥିବା ଆବର୍ଜନାର ସଫା କରିବା ପାଇଁ ଜୟମଙ୍ଗଳ କିପରି ଯୁକ୍ତିର ଆଶୟ ନେଉଥିଲେ ତାହା ସ୍ପଷ୍ଟ ଭାବରେ ଜଣାଯାଏ। ଧର୍ମାନ୍ତର ନ କରି ଶିକ୍ଷାଦୀକ୍ଷା ଦ୍ୱାରା ପତିତ ଜାତିର ଉନ୍ନତି କରାଯାଇପାରନ୍ତା। ସେ ସମୟରେ ଜୟମଙ୍ଗଳଙ୍କର ଏପରି ଚିନ୍ତା ବାସ୍ତବିକ ସାମାଜିକ ପୁନର୍ଗଠନ ଓ ସଂସ୍କାରରେ ସହଯୋଗ କରିଥିଲା। ଏହା ଅନନ୍ୟ ସାଧାରଣ ଥିଲା।

ସେହିପରି ଏହି ପ୍ରସଙ୍ଗରେ ୧୯୨୪ ମାର୍ଚ୍ଚ ୧୦ ଆଶା ସମ୍ବାଦପତ୍ରରେ ଆଲୋଚନା କରି ସେ ଲେଖିଥିଲେ - "ନିଖିଳ ଭାରତ ହିନ୍ଦୁ ମହାସଭାରେ ଅସ୍ପୃଶ୍ୟତା ନିବାରଣ ସପକ୍ଷରେ ବହୁତ ଆଲୋଚନା ହେବା ଦିନରେ ସମଗ୍ର ଭାରତରେ ରକ୍ଷଣଶୀଳ ପଣ୍ଡିତମାନଙ୍କ ମଧ୍ୟରେ ଗୋଟିଏ ବଡ଼ ଆନ୍ଦୋଳନ ଆସିଛି। ହିନ୍ଦୁଧର୍ମ ନାମରେ ଏମାନେ ନାନା ପ୍ରକାର କଥା କହି ଅସ୍ପୃଶ୍ୟତା ନିବାରଣ କରି ଦେଶ ସଂଗଠନୋପଯୋଗୀ କାର୍ଯ୍ୟରେ ବାଧା ଦିଅନ୍ତି। ମୁସଲମାନର ଭ୍ରାତୃଭାବରେ ଆକୃଷ୍ଟ ହୋଇ ବହୁ ସଂଖ୍ୟକ ହିନ୍ଦୁ ଭାଇ ମୁସଲମାନ ହୋଇଯିବା ଯେତେ ଦୁଃଖର କଥା ନୁହେଁ, ଖ୍ରୀଷ୍ଟାନ୍‌ର ଧନମାନ ଲାଳସାରେ ପଡ଼ି ସ୍ୱଦେଶ ମମତା ଛାଡ଼ି

ଖ୍ରୀଷ୍ଟାନ୍ ପାଲଟିଯିବା ସେପରି ଗଭୀର ବେଦନାର ବିଷୟ। ହାଡ଼ି ହ୍ୟାଟ୍ ବୁଟ୍ ବ୍ୟବହାର କରି କିମ୍ବା ଶୁଭ୍ର ସୁନ୍ଦର ଧୋତି ଚଦର ପରିହିତ ହୋଇ ଆଜିକାଲିର ବ୍ରାହ୍ମଣମାନଙ୍କ ପରି କିମ୍ବା ସେମାନଙ୍କ ଅପେକ୍ଷା ଅଧିକ ବିଦ୍ୟାବୁଦ୍ଧି ଲାଭ କରି କୋର୍ଟ କଚେରୀରେ ବସୁଥିବା ବେଳେ ଆମ ପଣ୍ଡିତମାନେ ତାଙ୍କୁ ନମସ୍କାର କରିବେ। କନ୍ତୁ ସେ ହିନ୍ଦୁ ହୋଇ ଅଶୁଭ୍ର ମୂର୍ଖ ହୋଇଥିବା ବେଳେ ତାକୁ ସେ ଅବସ୍ଥାରୁ ଉଦ୍ଧାର କରି ଆଣିବାକୁ ଯେ କାହିଁକି କୁଣ୍ଠିତ ହେଉଅଛନ୍ତି ବୁଝିପାରୁନାହିଁ। ସେମାନଙ୍କୁ ଉଚ୍ଚ ଅବସ୍ଥାକୁ ଆଣିବା ଦୂରେ ଥାଉ, ଛୁଇଁବା ପାଇଁ ମଧ୍ୟ ପ୍ରସ୍ତୁତ ନୁହଁନ୍ତି। ଜଡ଼ବସ୍ତୁ ପର୍ଯ୍ୟନ୍ତ ଦେହରେ ଧାରଣ କରି ରୁହନ୍ତି। କିନ୍ତୁ ଯାହାଠାରେ ନାରାୟଣ ସହଜ ପ୍ରତ୍ୟକ୍ଷ ଶ୍ରେଷ୍ଠ ଜୀବନ ମାନବକୁ ଅଛୁଆଁ କରି ରଖନ୍ତି। କି ଭୟାନକ ପାପ ! ଏ ପାପ ଘେନି ଆଜି ତଥାକଥିତ ହିନ୍ଦୁ ଓ ପଣ୍ଡିତ ସମାଜ ଖାଇବାକୁ ଦାନା, ପିନ୍ଧିବାକୁ କନା ଓ ରହିବାକୁ ବାସ ନ ପାଇ ଭିକ୍ଷା ମାଗି ବୁଲୁଛି। ତଥାପି ଚେତନା ଆସୁନାହିଁ। ପ୍ରତି କଥାରେ ହିନ୍ଦୁ ଧର୍ମର ଆସ୍ଫାଳନ। ଏହି ହିନ୍ଦୁଧର୍ମଟା କଣ ବୁଝିବା ପାଇଁ କାଶୀଧାମରେ ଗୋଟିଏ ପଣ୍ଡିତ ସଭା ହୋଇଅଛି। କେହି କେହି କହୁଛନ୍ତି ହିନ୍ଦୁ ଧର୍ମ ବୋଲି କିଛି ଗୋଟାଏ ନାହିଁ। ହିନ୍ଦୁ ଜାତି କିନ୍ତୁ ହିନ୍ଦୁ ଧର୍ମର ଉଲ୍ଲେଖ କୌଣସି ମୌଳିକ ଗ୍ରନ୍ଥରେ ନାହିଁ। ସୁତରାଂ ଅସ୍ପୃଶ୍ୟ ହୋଇ ପଞ୍ଚମ ଜାତିଟାଏ ମଧ୍ୟ ନାହିଁ। ଏହା କଣ ସତ୍ୟ ? ଉତ୍କଳୀୟ ପଣ୍ଡିତମାନେ ଏହାର ଉତ୍ତର ଦେଇ ଉପକୃତ କରିବେ।" ହିନ୍ଦୁର ଏହି ଅନ୍ଧ ଚିନ୍ତାଧାରା ଉପରେ ରଥ ଏହିପରି ପ୍ରତିବାଦ କରି ସମାଜ ସଂସ୍କାର ପାଇଁ ମାର୍ଗ ପ୍ରଲମ୍ବିତ କରିଥିଲେ।

ଅସ୍ପୃଶ୍ୟ ଜାତି (ପତିତ ଜାତି) ସମସ୍ୟା ସଂପର୍କରେ ଜୟମଙ୍ଗଳ ସେହି ୧୯୨୪ରେ ଅଧିକ ପ୍ରସାରିତ ଦୃଷ୍ଟିରେ ଚିନ୍ତା କରିଥିଲେ। ତେଣୁ ବ୍ରହ୍ମପୁର ସ୍ୱରାଜ୍ୟ ଆଶ୍ରମରେ ଥାଇ ଗଂଜାମ ଜିଲ୍ଲା କଂଗ୍ରେସ କମିଟିର

ସଂପାଦକ ହିସାବରେ ଉତ୍କଳ ଦୀପିକାରେ ଜୁଲାଇ ୨୬ ୧୯୨୪ ସଂଖ୍ୟାରେ ଏ ସଂପର୍କରେ ଅଧିକ ଆଲୋଚନା କରି ଲେଖିଥିଲେ - "ଅଛୁଆଁ ନାମରେ ଅବହେଳିତ ପ୍ରପୀଡ଼ିତ ହୋଇ ପଡ଼ି ରହିଥିବା ଲୋକେ ସାଧାରଣ ହିନ୍ଦୁଙ୍କ ସହିତ ସମାନ ଭାବରେ ସମାଜର ସକଳ ପ୍ରକାର ସୁବିଧାସୁଯୋଗ ଭୋଗ କରିବେ। ଏଥିପାଇଁ କଂଗ୍ରେସ ପକ୍ଷରୁ ଅସ୍ପୃଶ୍ୟତା କାମ ହେଉଛି। ଏ କାମ ଦୁଇ ଦିଗରେ ହେବ। ଏକ ଆଡ଼େ ପ୍ରପୀଡ଼ିତ ଲୋକଙ୍କ ପ୍ରାଣରେ ବଳ, ସାହସ ଦେଇ ହିନ୍ଦୁ ସମାଜର ସକଳ ପ୍ରକାର ସୁବିଧା ସୁଯୋଗ ଭୋଗ କରିବା ପାଇଁ ସେମାନଙ୍କୁ ଅଗ୍ରସର କରାଇବାକୁ ହେବ ଏବଂ ଅନ୍ୟ ଦିଗରେ ପ୍ରପୀଡ଼ନ ଯେପରି ବନ୍ଦ ହେବ ତାହାର ଉପାୟ କରିବାକୁ ହେବ। ପ୍ରଥମଟି ଦ୍ୱିତୀୟ ଅପେକ୍ଷା କଷ୍ଟ। ପ୍ରଥମ କାମ ପାଇଁ କର୍ମୀମାନଙ୍କର ବିଶେଷ ସମୟ ଓ ଶକ୍ତି ଆବଶ୍ୟକ। ଦ୍ୱିତୀୟଟି ଯଦିବା ଅପେକ୍ଷାକୃତ ସହଜ ତାହା କେବଳ ବକ୍ତୃତା ଦ୍ୱାରା ସଂସିଦ୍ଧ ହୋଇ ନପାରେ। ଦେଖାଯାଏ ଅଛୁଆଁ କେହି ରହିବା ଉଚିତ ନୁହେଁ। ସମସ୍ତଙ୍କୁ ଦେଉଳ, ବିଦ୍ୟାଳୟ, କୂପ ଆଦିରେ ସମାନ ଅଧିକାର ଲାଭ କରିବାକୁ ହେବ, ଇତ୍ୟାଦି କଥା ବକ୍ତୃତାରେ ଶୁଣି ଅନେକ ସମ୍ମତ ହୋଇଯାନ୍ତି। ପୁଣି ଏହି ସମ୍ମତ ହେବା ଲୋକେ ଜଣେ ହାଡ଼ିକୁ ଗୋଟିଏ ଧର୍ମଶାଳାକୁ ମଧ ଛାଡ଼ି ଦିଅନ୍ତି ନାହିଁ। ଏହା ଦେଖାଯିବା ମଧ ଅସମ୍ଭବ ନୁହେଁ ଯେ ସେହି ହାଡ଼ି କଂଗ୍ରେସ ନିର୍ଦ୍ଧାରଣ ବଳରେ ଉକ୍ତ ସ୍ଥାନ ଛାଡ଼ି ଯିବାକୁ ଅସ୍ୱୀକୃତ ହେଲେ ତା ଉପରେ ଯଦି ଅତ୍ୟାଚାର ଆରମ୍ଭ ହୁଏ ଅସ୍ପୃଶ୍ୟତା କାମର ବ୍ୟବସ୍ଥାପକ କମିଟି ସଭ୍ୟ ଓ ଅସ୍ପୃଶ୍ୟତା ନିବାରକ କଂଗ୍ରେସ କର୍ମୀ ସେ ପାଖରେ ନୀରବରେ ଠିଆ ହୋଇ ରହିବ। ଏହା କଳ୍ପନାର କଥା ନୁହେଁ। ଉତ୍କଳରେ ଏପରି ଘଟଣା ବଡ଼ ସମ୍ଭବପର ମୁଁ ଦେଖୁଛି। ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଆଗାମୀ ଅଧିବେଶନରେ ମୁଁ ଯେଉଁ ପ୍ରସ୍ତାବ ଆଗତ କରିବାକୁ ଯାଉଛି ତଦ୍ୱାରା ଏହି ସମସ୍ୟା ଅର୍ଥାତ୍

ଅସ୍ପୃଶ୍ୟତା କାମର ଦ୍ୱିତୀୟ ଦିଗଟା ବିଶେଷ ଭାବେ ସମାହିତ ହେବା ଆଶା କରାଯାଏ। ଅସ୍ପୃଶ୍ୟତା ନିବାରଣ କଂଗ୍ରେସର ମୂଳକାର୍ଯକ୍ରମାର୍ନ୍ତଗତ ଥିବାରୁ ସେଥିରେ ସଂପୂର୍ଣ୍ଣ ବିଶ୍ୱାସ ରଖି କାମ ନ କରିବା ବ୍ୟକ୍ତିମାନେ କଂଗ୍ରେସ କମିଟିର ସଭ୍ୟ ନିର୍ବାଚିତ ନ ହୁଅନ୍ତୁ କିମ୍ବା କଂଗ୍ରେସର କର୍ମୀ ସ୍ୱରୂପ ନ ରୁହନ୍ତୁ। ଏହା ହିଁ ମୋର ପ୍ରସ୍ତାବ। କମିଟି ଏହି ପ୍ରସ୍ତାବ ଗ୍ରହଣ ନ କଲେ ବୁଝିବି ଲୋକଭୟ ଓ ସମାଜଭୟ ଆମ୍ଭମାନଙ୍କୁ ଗ୍ରାସ କରି ରଖୁଛି। ଏଥିରେ ଅସ୍ପୃଶ୍ୟତା କାମ କରି ସତ୍ୟର ସାଧନା ହୋଇ ପାରିବ ନାହିଁ। ଆଉ ମୋର ମତ ଆମ୍ଭେମାନେ ଏପରି ଅବସ୍ଥାରେ ଥିବାବେଳେ କେବଳ ଖଦୀ ଦ୍ୱାରା ଯଦି ସ୍ୱରାଜ୍ୟ ଆସେ ତେବେ ଆମ୍ଭେମାନେ ସେ ସ୍ୱରାଜ୍ୟ ରଖିପାରିବା ନାହିଁ। ଅତଏବ ଖଦୀ ସହିତ ଅସ୍ପୃଶ୍ୟତା କାମ ମଧ୍ୟ ସଂଗେ ସଂଗେ ଚଳିବାକୁ ହେବ। ଉତ୍କଳରେ ହିନ୍ଦୁ ମୁସଲମାନ ସମସ୍ୟା ଗୁରୁତର ନୁହେଁ। ଉତ୍କଳ କେବଳ ଖଦୀ ଏବଂ ଅସ୍ପୃଶ୍ୟତା କାମ ଧରିପାରିଲେ ହେଲା। ପ୍ରାଦେଶିକ କାର୍ଯ୍ୟକାରୀ ସମିତିକୁ ଏହାର ସୁବିଚାର କରିବାକୁ ହେବ। ମୁଁ କହିଛି ଅସ୍ପୃଶ୍ୟତା କାମର ପ୍ରଥମ ଦିଗଟା ବଡ଼ କଷ୍ଟସାଧ୍ୟ। ଯେଉଁମାନେ କେତେ ଶତାବ୍ଦୀ ଧରି ପ୍ରପୀଡ଼ିତ ଓ ପଦଦଳିତ ହୋଇ ରହିଛନ୍ତି ସେମାନଙ୍କୁ ଜାଗ୍ରତ କରିବା ଯେ କେତେ ଗୁରୁତର ସମସ୍ୟା ତାହା ଅନୁଭବୀ ମାତ୍ର ବୁଝିପାରିବେ। ଏହି ଅଞ୍ଚ କେତେ ଦିନର ଲାଲ୍‌ଟୋପି ଭୟ ଅନେକଙ୍କ ମନରୁ ଯାଇପାରୁନାହିଁ। ଏପରି ସ୍ଥଳେ ଗୋଟିଏ ଜାତିରେ ପରିଣତ ହୋଇ ରହିଥିବା ପ୍ରପୀଡ଼ିତ ଲୋକଙ୍କ ଅବସ୍ଥା ଯେ କଣ ହୋଇଯିବ ତାହା ସହଜରେ ବୁଝାଯାଇପାରେ। ଏମାନେ ଗରୀବ। ଏମାନଙ୍କର ସମାଜ କୁସଂସ୍କାରାଚ୍ଛନ୍ନ। ଏମାନେ ନିରକ୍ଷର। ଏମାନଙ୍କର ଆର୍ଥିକ, ସାମାଜିକ ଓ ଶିକ୍ଷାର ଉନ୍ନତି ନକଲେ ଅନ୍ୟ ଜାତି ଆଗରେ ଏମାନଙ୍କୁ ଠିଆ କରାଇବା ସମ୍ଭବପର ନୁହେଁ। ପ୍ରଥମେ ଏହି ମାନଙ୍କୁ ସୂତା କଟାଇ ଓ ବୁଣାଇ ଜାତିରେ ପରିଣତ

କରିବାକୁ ହେବ। ମଦ୍ୟମାଂସ ଓ ଜୁଆଖେଳ ଆଦି ଛଡାଇଦେଲେ ଏମାନଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେବା ସଂଗେ ସଂଗେ ସମାଜ ବିମଳ, ସୁନ୍ଦର ହୋଇ ଉଠିବ। ଶିକ୍ଷା ଦୀକ୍ଷାରେ ଏମାନେ ଉନ୍ନତ ହୋଇ ଉଠିଲେ ନିଜର ଅଧିକାର ନିଜେ ଉପଲବ୍ଧି କରି ନିଜ ଦାବୀ ନିଜେ ଅଗ୍ରସର କରାଇବା ପାଇଁ ସକ୍ଷମ ହେବେ। ସେତେବେଳେ ଆଉ ଅସ୍ପୃଶ୍ୟତା କାମ ଘେନି ମୁଣ୍ଡ ଘୁରାଇବା ଆବଶ୍ୟକ ହେବ ନାହିଁ। ପତିତ ଜାତି ମଧ୍ୟରୁ ଯେଉଁ କର୍ମୀ ଏପରି ଅନ୍ତତଃ ବାହାର କରିପାରିବେ ତାଙ୍କର ଜୀବନ ଧନ୍ୟ। ପ୍ରତ୍ୟେକ କର୍ମୀ ନିଜ ନିଜ କ୍ଷେତ୍ରରେ ଏହା କରିପାରିବେ। **ପତିତଙ୍କୁ ନେଇ ପତିତପାବନ ଜଗନ୍ନାଥଙ୍କ ଜଗନ୍ମୋହନ କୋଠାରେ ଆମ୍ଭେମାନେ ଶୀଘ୍ର ଠିଆ କରାଇ ନ ପାରିଲେ ଭାରତର ଅନ୍ୟ ପ୍ରାନ୍ତର ଲୋକେ ଏହା କରିବେ। ଉତ୍କଳବାସୀ ମନେ ରଖିବାକୁ ହେବ ସେତେବେଳେ ଜଗନ୍ନାଥଙ୍କ ଦେଶର ଲୋକ ବୋଲି କହିବା ଅଧିକାର ଆମ୍ଭମାନଙ୍କର ନ ଥିବ।** ଏହି ପ୍ରସ୍ତାବରେ ରଥ କିପରି ପତିତ / ଦଳିତ ସମସ୍ୟା ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଥିଲା ଏବଂ ତାହାର ସମାଧାନ ଯେ ଏକାନ୍ତ ଆବଶ୍ୟକ, ତାହା ସୂଚାଇ ଦେବା ସଂଗେ ସଂଗେ ସମାଜର ପୁନର୍ଗଠନ ପାଇଁ ସ୍ୱର ତୀବ୍ର କରିଥିଲେ।

ଖଦୀ ବସ୍ତ୍ରର ଉତ୍ପାଦନ ଓ ପ୍ରସାରଣ ଦିଗରେ କଂଗ୍ରେସ କାର୍ଯ୍ୟକ୍ରମକୁ ଜୟମଙ୍ଗଳ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ। କିନ୍ତୁ ଉତ୍କଳରେ ଖଦୀ କାମରେ ବିଶେଷ ଅଗ୍ରଗତି ହେଉ ନଥିବାର ସେ ଉପଲବ୍ଧି କରିଥିଲେ। ଖଦୀକର୍ମ ସଂପର୍କରେ ଯଥେଷ୍ଟ ଆଲୋଚନା ପ୍ରକାଶ ନ ପାଇବାରୁ ଉତ୍କଳରେ ଏ ଦିଗରେ ସଚେତନତା ବୃଦ୍ଧି ପାଇନାହିଁ ବୋଲି ସେ ମତ ଦେଇଥିଲେ। ଖଦୀ କାର୍ଯ୍ୟରେ ସମୂହ ଉଦ୍ୟମ ଉତ୍କଳରେ ୧୯୨୪ ବେଳକୁ ଆରମ୍ଭ ହୋଇଥିବାର କଥା ସେ ଉତ୍କଳ ଦୀପିକାର ଅଗଷ୍ଟ ୧୬, ୧୯୨୪ ସଂଖ୍ୟାରେ ପ୍ରକାଶ କରିଥିଲେ। ପ୍ରଥମେ ଏହି

ବିଭାଗରେ ସେ ପାରିଶ୍ରମିକ ନେଇ କାମ କଲାବେଳେ ବିଶୃଙ୍ଖଳ ଭାବରେ କାର୍ଯ୍ୟ ଚାଲିଥିବାର ଦେଖିଥିଲେ । ଖଦୀବୋର୍ଡ ଭିତରେ ନୈତିକତାର ଖୁବ୍ ଅଭାବ ଦେଖି ଅଗଷ୍ଟ ୫, ୧୯୨୪ରୁ ସେ ଏହି ବିଭାଗରୁ ସଂପର୍କ ତୁଟାଇ ଦେଇଥିଲେ । ସେ ମଧ୍ୟ ଉତ୍କଳରେ ଖଦୀ କାମ ହଠାତ୍ ବନ୍ଦ କରି ସମସ୍ତ ଜିନିଷପତ୍ର ବିକାଭଙ୍ଗା କରି ବାକି ଆଦାୟକରି ଯାହା ମିଳିବ ତାହା ନିଖିଳ ଭାରତ କଂଗ୍ରେସ କମିଟିକୁ ଫେରାଇ ଦେବା ଉଚିତ ବୋଲି ଅଗଷ୍ଟ ୨୩, ୧୯୨୪ ଉତ୍କଳ ଦୀପିକାରେ ପ୍ରକାଶ କରିଥିଲେ । ଜଣେ ନିଷ୍ଠାପର କଂଗ୍ରେସ କର୍ମୀ ଓ ସଂଗଠକ ହିସାବରେ ତାଙ୍କର ଏପରି ମନ୍ତବ୍ୟ କେତେକଙ୍କୁ ଅପ୍ରୀତିକର ମନେ ହୋଇଥିଲେ ମଧ୍ୟ ସେଥିରେ ବିଚଳିତ ନ ହୋଇ ନିଜର ସଂସ୍କାର ପ୍ରବଣତାର ପରିଚୟ ଦେଇଥିଲେ । ଏ ସଂପର୍କରେ ଆଶା ସେପ୍ଟେମ୍ବର ୧୫, ୧୯୨୪ରେ ଏକ ଦୀର୍ଘ ବିବରଣୀ ରଥ ପ୍ରକାଶ କରିଥିଲେ । ସେ ଲେଖିଥିଲେ – ମହାତ୍ମାଗାନ୍ଧୀ ଜେଲକୁ ଯିବାପରେ ଖଦୀ ବିଭାଗ ଯେଉଁ ଉଦ୍ୟମ କରିଛି ସେଥିରେ ସୂତାକଟାକୁ କେବଳ ବ୍ୟବସାୟ ଦୃଷ୍ଟିରେ ରଖି କେତେ ଜଣ ପରନିର୍ଭରଶୀଳ ହୋଇଯାଇଛନ୍ତି ଏବଂ ଖଦୀ ବିଭାଗର ବର୍ତ୍ତମାନ ଅବନତି ବେଳେ ସେମାନଙ୍କର ଦଶା ମଧ୍ୟ ଶୋଚନୀୟ ହୋଇପଡ଼ିଛି । ଖଦୀ କେନ୍ଦ୍ରଗୁଡ଼ିକ ଉଠିଯିବା ପରେ ସେମାନେ ଅରଟ ଭାଙ୍ଗି ଅନ୍ୟ ବ୍ୟବସାୟ ଆରମ୍ଭ କରିଛନ୍ତି କି ବିଦେଶକୁ ଚାଲିଯାଇଛନ୍ତି ଖବର ମିଳିନାହିଁ । ଅପବ୍ୟୟ ଏବଂ କର୍ମୀମାନଙ୍କର ପରସ୍ପର ସଦ୍‌ଭାବର ଅଭାବ ଯୋଗୁଁ ମୂଳଧନ ନଷ୍ଟ ହୋଇଯାଇଅଛି । ବିଶେଷତଃ, ଯେଉଁ ନୀତିରେ ଅନୁପ୍ରାଣିତ ହୋଇ କଂଗ୍ରେସ କାମ ଚଳାଇବାର ଘୋଷଣା ଦିଆଗଲା ତା ସହିତ ଏ ରକମ ଖଦୀ କାମ ଖାପ ନ ଖାଇବାରୁ ବୋଧହୁଏ ଲୋକଙ୍କର ସହାନୁଭୂତି ରହିଲା ନାହିଁ । କୌଣସି ଆଶ୍ରମ କିମ୍ୱା ଖଦୀ ମନ୍ଦିରକୁ ଯାଇ ଦେଖିଲେ କେବଳ ବେଭାରର କୌଶଳ ଓ ତତ୍‌ସଂକ୍ରାନ୍ତ ଚହଳ ହିଁ

ଦେଖାଗଲା । ଶୀଘ୍ର ସୂତାକାଟି ଆଣି ନ ଦେଲେ ମଜୁରୀ ଉଣାହେବ ବୋଲି କଟାଳି ସବୁ ସୂତା ଧରି ଆସିଛି । ଅଥଚ ନିଜ ପରିଧାନ ପାଇଁ ବିଦେଶୀ ଭିନ୍ନ ଗତି ନାହିଁ । ଖଦୀ ସବୁ ଧୋବ କରି ଆଣିଦେଲେ ଶୀଘ୍ର ଗୁଜରାଟ ପଠାଇବାକୁ ହେବ ବୋଲି ଆଦେଶ ଆସିଛି ଯେ ଖଦୀକର୍ମୀ ସେଥିରେ ବ୍ୟସ୍ତ । ଏ କାର୍ଯ୍ୟ ଶୀଘ୍ର ସମାଧାନ କରିବ ବୋଲି ଧୋବା ମଦପିଇ ଆସି ଆଶ୍ରମରେ ପ୍ରଳାପ କାଢ଼ିଛି । ଏଣେ ଅରଟ ଅରଟ ଉପକରଣ ଲେଖାରେ ଆଉ ଅନାମତ ବାକି ହିସାବ ଦେଖାରେ କର୍ମୀ ଏତେ ଦୂର ବ୍ୟସ୍ତ ଯେ ଆଶ୍ରମଟା ଟିକିଏ ପରିଷ୍କାର କରିବା ପାଇଁ ସମୟ ନାହିଁ । ଏତିକିବେଳେ କେଉଁଠାରୁ ସୂତା ଖଦି କିମ୍ୱା ହିସାବ ଆସିଲା ନାହିଁ ଏବଂ କେଉଁଠାରେ କିଏ ଟଙ୍କା ଅପହରଣ କଲା ବୋଲି କର୍ମୀ ଏତେଦୂର ବିଚଳିତ ଯେ ଅହିଂସା ଅସହଯୋଗ ନୀତିର ସୀମା ଲଂଘନ କରିବା ପାଇଁ ସେ ବାଧ୍ୟ ହୋଇଛି । ଦୈନିକ ଉପାସନା ଓ ସୂତାକଟା ହେବ ବୋଲି ଆଶ୍ରମରେ ନିୟମ କରାଯାଇଛି । କିନ୍ତୁ ତାହା ପ୍ରତିପାଳିତ ହୋଇପାରୁନାହିଁ । କୌଣସି ଗ୍ରାମବାସୀ ସୂତାକଟା ଶିଖିବାକୁ ବ୍ୟାକୁଳ । ଖଦୀ ବିଭାଗ ତାହାର କୌଣସି ବ୍ୟବସ୍ଥା କରିପାରିଲା ନାହିଁ । ଖଦୀ କର୍ମୀମାନଙ୍କର ଲୋକଙ୍କ ସହିତ ସଂସ୍ପର୍ଶ ରହିଲା ନାହିଁ କି କର୍ମୀମାନଙ୍କର ମଧ୍ୟ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ଜାତ ହେଲା ନାହିଁ ।"

ଜୟମଙ୍ଗଳ ୧୯୨୪ରେ ନାରୀ ଆନ୍ଦୋଳନ ଓ ନାରୀଶିକ୍ଷା ପ୍ରତି ପୂର୍ଣ୍ଣ ସମର୍ଥନ ଦେଇଥିଲେ । ପ୍ରଜାତନ୍ତ୍ର ପ୍ରଥମ ଭାଗ ୨୩ ସଂଖ୍ୟାରେ ନାରୀମାନଙ୍କ ପ୍ରତି ଯେଉଁ ନିବେଦନ ସେ ପ୍ରକାଶ କରିଥିଲେ ତାହା ଅନେକ ଓଡ଼ିଆ ନାରୀ ମନରେ ଆଶା ଓ ଉତ୍ସାହ ସୃଷ୍ଟି କରିଥିଲା । ସେଥିପାଇଁ ରସାମଣି ଦେବୀ, ସ୍ୱର୍ଣ୍ଣମୟୀ ଦେବୀ, ପାର୍ବତୀ ଦେବୀ, ଲକ୍ଷ୍ମୀ ଦେବୀ, ବ୍ରହ୍ମପୁରରୁ ଏପ୍ରିଲ ୨୬, ୧୯୨୪ ଉତ୍କଳ ଦୀପିକା ସଂଖ୍ୟାରେ

ଜୟମଙ୍ଗଳଙ୍କୁ ଏକ ପତ୍ର ଲେଖି ପ୍ରକାଶ କରିଥିଲେ, "ଆପଣ ଆମ୍ଭମାନଙ୍କ କଥା ଯେତେ ଭାବୁଛନ୍ତି ଉତ୍କଳ ମରଦମାନେ ସେତିକି ଯେଉଁଦିନ ଭାବିବେ ଆମ୍ଭେମାନେ ପଶୁକରି କାହିଁକି ପଡ଼ି ରହିବୁଁ। ଆନ୍ଧ୍ର ମହିଳାମାନଙ୍କ କଥା ଯାହା ଦେଖିଲେ ତାହା ସେ ଜାତିର ମରଦମାନଙ୍କ ଗୁଣରୁ। କେତେଦିନରୁ ଆନ୍ଧ୍ର ଭଉଣୀମାନେ ପଦାକୁ ବାହାରି ପଡ଼ିଲେଣି ଯେ ପଦାକୁ ବାହାରି ପଡ଼ିବାଟା ଆଉ ସେମାନଙ୍କର ଏତେ ବଡ଼ କଥା ହୋଇ ରହିନାହିଁ। କିନ୍ତୁ ଆମ୍ଭ ଭଉଣୀମାନେ ଆଜି ପର୍ଯ୍ୟନ୍ତ ହାଣ୍ଡିଶାଳ ଛଡ଼ା ଆଉ କିଛି ଦେଖିପାରିଲେ ନାହିଁ। ଆମ୍ଭେମାନେ ଆପଣଙ୍କୁ ଅନୁରୋଧ କରୁଛୁଁ ଉତ୍କଳ ମହିଳା ସମ୍ମିଳନୀ ପାଇଁ ପ୍ରଥମେ ଆପଣ ଏ ବର୍ଷ ଯୋଗାଡ଼ କରି ଦିଅନ୍ତୁ। କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ସିଂହଭୂମି, ଗଂଜାମର ଭଉଣୀମାନେ ଶୀଘ୍ର ତତ୍ପର ହେବେ। ଆମ୍ଭେମାନେ ସେହି ସଭାନେତ୍ରୀ ହେବାପାଇଁ କଟକ ଭାଗିରଥି ବାବୁଙ୍କ ସହଧର୍ମିଣୀ ପୂଜନୀୟା ଶ୍ରୀମତୀ ସରଳା ଦେବୀଙ୍କ ନାମ କହୁଛୁ।" ଜୟମଙ୍ଗଳ ରଥଙ୍କର ମହିଳା ସମ୍ମିଳନୀ ପାଇଁ ଆବେଦନର ଉତ୍ତର ମଧ୍ୟ "ଲୋକମୁଖ" ପତ୍ରିକାର ପ୍ରଥମ ଭାଗ ଦ୍ୱିତୀୟ ସଂଖ୍ୟାରେ ନାରୀମାନଙ୍କ ତରଫରୁ ପ୍ରକାଶ ପାଇଥିଲା। ବୁଗୁଡ଼ାରୁ କାଳୁ ପାଣିଗ୍ରାହୀ ୧୯୨୪ ଜୁନ୍ ୧୬ରେ "ଆଶା"ର ପୃଷ୍ଠାରେ ଜୟମଙ୍ଗଳଙ୍କର ଏ ସଂପର୍କିତ ଭାବ ଉଚ୍ଚ ଓ ପ୍ରସ୍ତାବ ମହତ ବୋଲି ମଧ୍ୟ ପ୍ରକାଶ କରିଥିଲେ। ସେ କହିଥିଲେ "ଜୟମଙ୍ଗଳ ବାବୁ ଉତ୍କଳ ମହିଳା ସମ୍ମିଳନୀ କରିବେ। ଓଡ଼ିଆ ମରଦମାନେ ତ ଏତେ ଦିନ ଏତେ ପାଶ୍ଚାତ୍ୟ ଶିକ୍ଷାପାଇ ଗଠନ କରିଥିବା ସମ୍ମିଳନୀରୁ ତାଙ୍କ ପାରିବାର ପଣ ଜଣାପଡ଼ିଲା। ଏବେ ରନ୍ଧନଶାଳାର ଅନ୍ଧାରକୋଣେ ଥିବା ମହିଳାମାନେ ଅଣ୍ଟାଭିଡ଼ି ମହିଳା ସମ୍ମିଳନୀ କରିବାକୁ ବସିଅଛନ୍ତି। ଯଦି ଉତ୍କଳ ମହିଳାମାନେ ସାମୟିକ ଉତ୍ତେଜନାରେ ପଡ଼ି ତାଙ୍କ ଚିରାଧିକୃତ ରନ୍ଧନଶାଳା ଛାଡ଼ି ବର୍ତ୍ତମାନ ଏତେ ଗୁରୁତର କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ

ବସିଅଛନ୍ତି, ସେମାନେ ମନେ ରଖିବାକୁ ହେବ ଯେ ସେମାନଙ୍କର ମରଦମାନଙ୍କର ସମ୍ମିଳନୀ ପରି ତାଙ୍କ ସମ୍ମିଳନୀଟି ଗୋଟିଏ ପ୍ରହସନରେ ପରିଣତ କରି ତାଙ୍କ ପଡ଼ୋଶୀ ଆନ୍ଧ୍ର ଭଉଣୀମାନଙ୍କର ହାସ୍ୟାସ୍ପଦର ପାତ୍ର ହେବେ ନାହିଁ।"

ଉତ୍କଳ ସ୍ୱରାଜ୍ୟ ଆଶ୍ରମ ପାଇଁ ପୋଷ୍ଟ ଅଫିସ୍ ଆଗର କୋଠି ୭୦୦୦ ଟଙ୍କାରେ ୧୯୨୪ରେ କିଣାଯାଇଥିଲା। ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ଦିନଠାରୁ କର୍ମୀମାନେ ଏପରି ଏକ ସ୍ଥାୟୀ ଆବାସ ଲୋଡ଼ିଥିଲେ। ମାତ୍ର ଜୟମଙ୍ଗଳଙ୍କର ତତ୍ତ୍ୱାବଧାନରେ ଏହି ସ୍ୱରାଜ୍ୟ ଆଶ୍ରମ ୧୯୨୪ରେ ବ୍ରହ୍ମପୁରରେ ପ୍ରତିଷ୍ଠିତ ହେଲା। ଏହି ଆଶ୍ରମରେ ସାଧନାର୍ଥିନୀ ମହିଳାମାନେ ମଧ୍ୟ ଯୋଗ ଦେଇଥିଲେ। ଅଛୁଆ ଜାତିର ପିଲାଙ୍କୁ ପାଠ ପଢ଼ାଇବା, ବିପନ୍ନ ଅଞ୍ଚଳର ସେବା ଇତ୍ୟାଦି କାର୍ଯ୍ୟ ପାଇଁ ଆଶ୍ରମ ଜୟମଙ୍ଗଳଙ୍କ ତତ୍ତ୍ୱାବଧାନରେ କର୍ମମୁଖର ଉଠିଲା। (ଅତିରିକ୍ତ ଉତ୍କଳ ଦୀପିକା, ଏପ୍ରିଲ ୫, ୧୯୨୪) ୧୯୨୩ରେ ଘୁମୁସୁରରେ କଂଗ୍ରେସ କାର୍ଯ୍ୟ କରୁଥିବା ସମୟରେ ରସଲକୋଣ୍ଡାଠାରେ ଗୋରକ୍ଷାଶ୍ରମ ଓ ଆର୍ଯ୍ୟ ସମାଜର ପ୍ରତିଷ୍ଠା ଓ ପରିଚାଳନା ଭାର ଜୟମଙ୍ଗଳ ନେଇଥିଲେ। ସେ ଶ୍ରୀବତ୍ସ ପଣ୍ଡା ଏବଂ କେତେଜଣ କଂଗ୍ରେସ କର୍ମୀଙ୍କୁ ସଂଗରେ ଘେନି ବୁଗୁଡ଼ା ଅଞ୍ଚଳରୁ ଏଥିପାଇଁ କେତେ ଅର୍ଥ ସଂଗ୍ରହ କରିଥିଲେ। କିନ୍ତୁ ହଠାତ୍ ଜୟମଙ୍ଗଳ ଜିଲ୍ଲା କମିଟିର ଦାୟିତ୍ୱ ନେଇ ବ୍ରହ୍ମପୁରରେ ରହିବାରୁ ଗୋରକ୍ଷାଶ୍ରମ ଓ ଆର୍ଯ୍ୟ ସମାଜର ସକଳ ପ୍ରକାର କାଗଜପତ୍ର ଓ ଧନ ଶ୍ରୀବତ୍ସ ପଣ୍ଡାଙ୍କୁ ଦେଇଥିଲେ। ଜିଲ୍ଲାର କାର୍ଯ୍ୟ ପାଇଁ ତାଲୁକ ସ୍ୱାର୍ଥ ବଳି ଦେବାକୁ ହେବ ବୋଲି ସେ ଘୁମୁସର ଛାଡ଼ିବାକୁ ବାଧ୍ୟ ହୋଇଥିଲେ। ତେଣୁ ଗୋରକ୍ଷାଶ୍ରମ ଓ ଆର୍ଯ୍ୟ ସମାଜ ପାଇଁ ସେ ୧୯୨୪ରେ ବିଶେଷ ଧ୍ୟାନ ଦେଇ ପାରିଲେ ନାହିଁ।

ଉତ୍କଳ ପ୍ରାଦେଶିକ କାର୍ଯ୍ୟକାରୀ ସମିତିର ନିଷ୍ପତ୍ତି ଅନୁସାରେ ୧୯୨୪ ମେ ମାସରେ କଟକରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ଶିଳ୍ପ ପ୍ରଦର୍ଶନୀ ବସିବ ବୋଲି ସ୍ଥିର ହୋଇଥିଲା ଏବଂ ଉତ୍କଳ ପ୍ରାଦେଶିକ ଖଦୀ ବୋର୍ଡ଼ ଏହି ପ୍ରଦର୍ଶନୀର ସକଳ ପ୍ରକାର ଆୟୋଜନ କରିବେ ବୋଲି ଜଣାଯାଇଥିଲା । ସେଥିପାଇଁ ଉତ୍କଳ ପ୍ରାଦେଶିକ ଖଦୀ ବୋର୍ଡ଼, ଉତ୍କଳ ସ୍ୱରାଜ୍ୟ ଆଶ୍ରମ, ବ୍ରହ୍ମପୁରରୁ ଜୟମଙ୍ଗଳ ରଥ ପ୍ରଦର୍ଶନୀକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ଶିଳ୍ପୀ ଏବଂ ଶିଳ୍ପପ୍ରିୟ ବ୍ୟକ୍ତିମାନଙ୍କୁ ୧୯୨୪ରେ ଅନୁରୋଧ କରିଥିଲେ । ସେହି ଉପଲକ୍ଷେ ଏକ ସୁଚିନ୍ତିତ ପ୍ରସଙ୍ଗ ୧୯୨୪ ଏପ୍ରିଲ ୧୨ ଉତ୍କଳ ଦୀପିକାରେ ପ୍ରକାଶ କରିଥିଲେ । ସେ ଲେଖିଥିଲେ – ପ୍ରାଚୀନ କାଳରୁ ଶିଳ୍ପ ସକାଶେ ଉତ୍କଳର ପ୍ରଶସ୍ତି ଅଛି । ଆଜି ସୁଦ୍ଧା ସେ ଉପାଦାନ ଓ ହସ୍ତର ପ୍ରବୀଣତା ଲୋପ ପାଇନାହିଁ । ସମୟେ ସମୟେ ଏପରି କେତେଗୁଡ଼ିଏ ଶିଳ୍ପ ଦେଖିବାକୁ ମିଳୁଛି ଯାହା ଆମ୍ଭମାନଙ୍କ ଭୁବନେଶ୍ୱର, କୋଣାର୍କ ପ୍ରଭୃତିର ମହତ୍ତ୍ୱକୁ ଅକ୍ଷୁର୍ଣ୍ଣ ରଖୁଛି । ଉତ୍କଳରେ କୋଇଲା ଲୁହାଠାରୁ ଆରମ୍ଭ କରି ଅଭ୍ରହିରା ତମ୍ବା ପ୍ରଭୃତି ନାନା ପ୍ରକାର ଧାତୁର ଖଣି ବିଭିନ୍ନ ଶିଳ୍ପର ଉପାଦାନ ହୋଇ ରହିଛି । ପୂର୍ବରୁ ଏଠାରେ ଲୁଗା ପ୍ରସ୍ତୁତ କରିବାର ବ୍ୟବସ୍ଥା ଅଛି । ପ୍ରକାଣ୍ଡ ପ୍ରକାଣ୍ଡ ଅରଣ୍ୟ ଥିବାରୁ ପ୍ରଚୁର ପରିମାଣରେ କାଠ ମିଳୁଛି । ବିଭିନ୍ନ ରକମର ପ୍ରସ୍ତର ମଧ୍ୟ ଏଠାରେ ଦେଖାଯାଉଛି । ସୁବିସ୍ତୃତ ସମୁଦ୍ର ଉପକୂଳ ଆଉ ମନୋହର ଚିଲିକା ଓଡ଼ିଆ ନାକ ଚକ୍ଷୁରେ ଧାରଣ କରିବାକୁ ସର୍ବଦା ଚହିଁ ରହିଛି । ସର୍ବୋପରି କାର୍ପାସ ସେ ପ୍ରାଚୀନ ଗୌରବ ଫେରାଇ ଆଣିବା ନିମନ୍ତେ ଉତ୍କଳର ପ୍ରତ୍ୟେକ ଗୃହସ୍ଥକୁ ଆଜି ଆହ୍ୱାନ କରୁଛି ।

ସରକାରର କଳକୌଶଳ, ବନ୍ୟା ଦୁର୍ଭିକ୍ଷ ଓ ଆର୍ଥିକ ଦୂରବସ୍ଥା ମଧ୍ୟରେ ସୁଦ୍ଧା ଆଜି ଉତ୍କଳର ବିଭିନ୍ନ ପ୍ରାନ୍ତରେ ସେ ଶିଳ୍ପ ଜୀବିତ ରହିଅଛି,

ଦେଖିଲେ ପ୍ରାଣରେ ଆହ୍ଲାଦ ଆସେ। ଜାମସେଦ୍‌ପୁର ଟାଟା କଂପାନୀ, ଆସିକା ଚିନି କାରଖାନା, କଟକ ଟ୍ୟାନେରୀ ଓ ଅଳଂକାର ଭଣ୍ଡାର ଆଜି ନୀରବ ଭାଷାରେ କହୁଅଛନ୍ତି ଯେ ଭାରତର ଏ କଳକାରଖାନା ଯୁଗରେ ମଧ୍ୟ ଉତ୍କଳ ପଛରେ ପଡ଼ି ରହିନାହିଁ। ଯେଉଁ ହାତ ତିଆରି ଖଦୀ କଳ ତିଆରି ଖଦୀକୁ ପରାଜିତ କରି ଇଷ୍ଟ ଇଣ୍ଡିଆ କଂପାନୀ ଦ୍ୱାରା ପ୍ରଂଶସିତ ହୋଇଥିଲା ଏବଂ ଇଂଲଣ୍ଡ ପର୍ଯ୍ୟନ୍ତ ବ୍ୟବହୃତ ହୋଇଥିଲା, ତାହା ଆଜି ସୁଦ୍ଧା ଗଂଜାମରେ ଅଛି। ତାହାର ଜରି କାନ୍ଥ ମୁହଁ ଦିଆଯାଇଥିବା ଖଦୀ, ବ୍ରହ୍ମପୁର ପାଟ, ମଂଜୁଷାର ବାଡ଼ିଛଡ଼ି, ବେଲଗୁଣ୍ଠାର ପିତଳମାଛ, ଆସିକା ଓ ପୋଲସରାର ଖଲା, ମଥୁରା ଓ ବିକ୍ରମପୁରର ପିତଳ କାମ, ଚିକିଟିର ହାତୀଦାନ୍ତ, ପାରଳାର ଜାଇକାଠି ଓ ଶିଙ୍ଘକାମ, ବଡ଼ଗଡ଼ ଝିକର, ମୁଣ୍ଡମରାଇ କେନ୍‌ବାସ ଓ ବାଲିପଦାର କାଠକାମ ପ୍ରଦର୍ଶନୀରେ ରହିବାର ଯୋଗ୍ୟ। ଉତ୍କଳରେ ଆହୁରି ବି ଜିନିଷ ଅଛି ଯାହା ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଓ ସିଂହଭୂମି ଜିଲା କଂଗ୍ରେସ କମିଟିର ସଂପାଦକମାନେ ଓ ଖଦୀ କେନ୍ଦ୍ରର ପରିଚାଳକମାନେ ଆଜହୁଁ ସଂଗ୍ରହ କରି ପ୍ରଦର୍ଶନୀକୁ ଆଣିବେ। ଯେଉଁମାନେ ୬୦ରୁ ୧୦୦ ନମ୍ବର ପର୍ଯ୍ୟନ୍ତ ସୂତା କାଟିବେ, ସେମାନେ ପ୍ରଦର୍ଶନୀରେ ନିଜର କୃତିତ୍ୱ ଦେଖାଇବେ। ଗଂଜାମର କୁକୁଡ଼ାଖଣ୍ଡି, ମେଳିଆ ପୁଟୁ ଓ ପିଉଳ ପ୍ରଭୃତି ସ୍ଥାନରେ ଏପରି ଲୋକ ଅଛନ୍ତି ଯେ ଆମ୍ଭେମାନେ ଜାଣୁଁ ପାଟ ଆଉ ସୂତାରେ ନକ୍‌ସା ଧଡ଼ି ବୁଣିବା ଏ ସ୍ଥାନମାନଙ୍କରେ ଗୋଟିଏ ବିଶେଷତ୍ୱ ବୋଲି କହିବାକୁ ହେବ। ଉତ୍କଳରେ ବିଭିନ୍ନ ପ୍ରକାର ଶିଳ୍ପ ଅଛି। ଶିଳ୍ପୀ ଆଉ ଶିଳ୍ପର ଉପାଦାନ ଅଛି। ତଥାପି ଗୌରବ ନାହିଁ; ଅନ୍ନ ବସ୍ତ୍ର ନାହିଁ। ଏହାର କାରଣ ଉତ୍କଳର ଶିଳ୍ପ "ବନ ମାଳତୀ ପରି ବନେ ଫୁଟି ଝଡୁଛି।" ସେଦିନ କୋକନଦ ନିଖିଳ ଭାରତ ଶିଳ୍ପ ପ୍ରଦର୍ଶନୀରେ ଶିଳ୍ପର ଖଣି - ଏହି ଉତ୍କଳର ନାମ ନ ଦେଖି ଅନେକଙ୍କ ପ୍ରାଣରେ ଆଘାତ ଲାଗିଛି।" ଏହିପରି ଉତ୍କଳର ଶିଳ୍ପ ପ୍ରାଧାନ୍ୟ

କଥା ପ୍ରକାଶ କରି ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ଏ ସବୁର ପ୍ରଦର୍ଶନୀ ପାଇଁ ସେ ନିବେଦନ କରିଥିଲେ ।

ଜୟମଙ୍ଗଳଙ୍କର ସଂସ୍କାରକ ଜୀବନ ୧୯୨୫ ଏବଂ ୧୯୨୬ରେ ବେଶ୍ ସକ୍ରିୟ ହୋଇ ଉଠିଥିଲା । ବାଧତାମୂଳକ ବୈଧବ୍ୟ ଦେଶରେ ନାନା ପ୍ରକାର କଳଂକ ଆଣି ଦେଉଥିବା ବେଳେ ଭାରତର ଅନ୍ୟାନ୍ୟ ପ୍ରଦେଶ ପରି ଉତ୍କଳ ବିଧବା ବିବାହରେ ସାହାଯ୍ୟ କରିବାକୁ ଅଗ୍ରସର ହୋଇ ନଥିବା ଦେଖି ପଞ୍ଜାବ ଲାହୋର ବିଧବା ବିବାହ ସହାୟକ ସଭା ଗଂଜାମର ବ୍ରହ୍ମପୁରଠାରେ ଗୋଟିଏ ଶାଖା ୧୯୨୫ରେ ଖୋଲିଥିଲେ । ରଥ ବିଧବା ବିବାହ ସହାୟକ ସଭା, ବ୍ରହ୍ମପୁରର ସଂପାଦକ ହିସାବରେ କାର୍ଯ୍ୟ କରିଥିଲେ । ବିଧବା ବିବାହକୁ ପୂର୍ଣ୍ଣ ସମର୍ଥନ ଦେଇ ସେ ୧୯୨୫ରେ ଅଭିଯାନ ଚଳାଇଥିଲେ । (ଉତ୍କଳ ଦୀପିକା, ଜାନୁଆରୀ, ୧୦, ୧୯୨୫)

ବିଧବାର ଉପସ୍ଥିତି ସମାଜର କଳଂକ ବୋଲି ସେ ମନେ କରିଥିଲେ । ତାଙ୍କ ମତରେ ବିହାର ଓଡ଼ିଶାରେ ୧୯୨୫ ସୁଦ୍ଧା ଓଡ଼ିଶାର ବିଧବା ସଂଖ୍ୟା ଯଥେଷ୍ଟ ଅଧିକ । ଅନ୍ୟାନ୍ୟ ପ୍ରଦେଶର ଶାସନାଧୀନରେ ଥିବା ଓଡ଼ିଆଙ୍କୁ ମିଶାଇଲେ ବିଧବା ସଂଖ୍ୟା ଓଡ଼ିଶାର ଆହୁରି ବେଶି । ଓଡ଼ିଶାର ଏହି କଳଂକ ସଂପର୍କରେ ଆଲୋଚନା କରି ସେ ଉତ୍କଳ ଦୀପିକାରେ ମାର୍ଚ୍ଚ ୧୪, ୧୯୨୫ ସଂଖ୍ୟାରେ ଲେଖିଥିଲେ - ଏକ କଳଂକର ବୋଝ ଘେନି ଓଡ଼ିଆ ଜାତି ଜଗତ ଆଗରେ ମୁଣ୍ଡ ଟେକି ପାରିବ ତ ? ଭାରତର ସୁପ୍ରସିଦ୍ଧ ପଣ୍ଡିତ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ବିଧବା ବିବାହକୁ ଶାସ୍ତ୍ରସିଦ୍ଧ ଓ ସରକାରୀ ଆଇନାନୁମୋଦିତ କରି ଦେଇଥିବାରୁ ଭାରତର ବିଭିନ୍ନ ପ୍ରଦେଶରେ ଅବାଧରେ ଏହା ଚଳୁଅଛି । ଏପରି ସ୍ଥଳେ ନିଷ୍ଠୁର ଦେଶାଚାର, କୁଳାଚାର ବଶବର୍ତ୍ତୀ ହୋଇ ଓଡ଼ିଆ ଆଉ କେତେ ଦିନ ନିଜର ବାଳୁତ କନ୍ୟା ଓ ଭଗିନୀଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରି ଚାଲୁଥିବ ?

ବାଳୁତ କନ୍ୟା କାଚ ସିନ୍ଦୂର ପାଇଁ ଆତୁର। ମାଛମାଂସ ଖାଇବା ପାଇଁ ଲାଳାୟିତ। ଗୃହସଂସାର ନିମନ୍ତେ ପ୍ରବଳ ପିପାସାନ୍ୱିତ; ତାକୁ ସେଥିରୁ ବଞ୍ଚିତ କରି ଉପବାସରେ ମାରି ତା ଆଖି ଆଗରେ ନିଜେ ସକଳ ସୁଖ ଭୋଗରେ ମାତିବା ପିତାମାତାର କାର୍ଯ୍ୟ ନା ପିଶାଚର କାର୍ଯ୍ୟ ? ପୁଅ ବିବାହ ନ ହୋଇ ରହିଲେ କିମ୍ବା ବୃଦ୍ଧ ବୟସରେ ସୁଦ୍ଧା ବିପତ୍ନୀକ ହେଲେ ତାର ସୁଖ ଦେଖିବାକୁ ତାକୁ ଧରିମାରି ବିବାହ କରାଇ ଦିଆଯାଉଅଛି। କିନ୍ତୁ ଝିଅବେଳକୁ ପିତାମାତା ବଂଧୁବାନ୍ଧବ ପଥର ହୋଇଯାଉଛନ୍ତି କିପରି ? ମୁଁ ଜାଣେ ଅନେକ କାନ୍ଦୁଛନ୍ତି ଓ ଅନୁତାପ କରୁଛନ୍ତି। କିନ୍ତୁ କୁଳାଚାରକୁ ଏଡିପାରୁ ନାହାଁନ୍ତି। ଯେଉଁ କୁଳ ମୂର୍ଖ ଦୁର୍ବଳ, ସେଥିରେ ରହିବା କି ସୁଖ ? ଆଜିକାଲି କେଉଁ କୁଳର ସାଧ ଅଛି ଯେ ବିଧବା ବିବାହ ବିପକ୍ଷରେ ଯୁକ୍ତିତର୍କ କରି ଶାସ୍ତ୍ର ଦେଖାଇପାରିବ ଏବଂ ବିଧବା ବିବାହ କରିବା ବ୍ୟକ୍ତିକୁ ପ୍ରକାଶ୍ୟ ଭାବେ କୁଳରୁ ଅନ୍ତର କରିପାରିବ ? ମିରୁଟର ଚୌଧୁରୀ ନାମକ ଏକ କୁଳରୁ ପଣ୍ଡିତ ରାଧାଲାଲ ଓ ପଣ୍ଡିତ ଘାସିରାମକୁ ବିଧବା ବିବାହ ଦେବା ସଂପର୍କରେ ଅନ୍ତର କରାଯିବାରୁ ଉକ୍ତ କୂଳର ପ୍ରଧାନ ଲୋକଙ୍କୁ ମିରଟ୍ ସେସନ୍‌ସ ଜଜ୍ ଯେ ଦଣ୍ଡ ଦେଲେ ତାହାର ପୁନରବିଚାର ନିମନ୍ତେ ଆଲାହାବାଦ ହାଇକୋର୍ଟକୁ ମୋକଦ୍ଦମା ଯାଇଥିଲା। ସେଠାରେ ମଧ୍ୟ ସେ ଦଣ୍ଡ ସ୍ଥିର ହେଲା। ସେଦିନ ସତୀଦାହ ପ୍ରଥା ଉଠାଇ ଦେଲାବେଳେ କୁଳରେ ଏ ରୂପ ଏକ ରୋଗ ଆସିଥିଲା। କିନ୍ତୁ ତାହା ଯେପରି ଶୀଘ୍ର ପ୍ରଶମିତ ହୋଇ ସ୍ତ୍ରୀ ଜାତିର ଉଦ୍ଧାର ହେଲା ସେପରି ଏବେ ମଧ୍ୟ ବିଧବା ବିବାହ ପ୍ରଚଳିତ ହେବ ସନ୍ଦେହ ନାହିଁ। ନିଜ ବୁଦ୍ଧିରେ ଯେଉଁମାନେ ବିଧବା ଓ ବିପତ୍ନିକ ହୋଇ ରହିବାକୁ ସୁଖବୋଧ କରିବେ, ସେମାନଙ୍କର ପୁନର୍ବିବାହ ନିମନ୍ତେ ଚେଷ୍ଟା କରିବା ଅବଶ୍ୟ ଧୃଷ୍ଟତାର କଥା। କିନ୍ତୁ ଯେଉଁମାନଙ୍କର ବିବାହ କରିବାକୁ ଇଚ୍ଛା ଅଛି ସେମାନଙ୍କୁ ସେଥିରୁ ବଞ୍ଚିତ କରି ରଖିବା ଦ୍ୱାରା ସମାଜରେ ବ୍ୟଭିଚାର, ଭ୍ରୁଣହତ୍ୟା ଆଦି ପାପସକଳ ଦେଖାଯିବା

କେବଳ ସ୍ୱାଭାବିକ। ଯେଉଁମାନେ ଝିଅକୁ କୁଳରେ ରଖିବାକୁ ଏଡ଼େ ଆତୁର, ସେମାନଙ୍କୁ ଦାଣ୍ଡର ଭିକାରୁଣୀ କରି ଛାଡ଼ି ଦେଉଛନ୍ତି କାହିଁକି ? ପୁରୀଠାରୁ ନବଦ୍ୱୀପ ବୃନ୍ଦାବନ ଯାଏ ଯେଉଁ ବିଧବାମାନେ ମାତାଜୀ ହୋଇ ବୁଲୁଛନ୍ତି ସେ ସମସ୍ତେ ଶୁଦ୍ଧ ଚରିତ୍ର ବୋଲି କିଏ କହିବ ? କେତେ ବିଧବା ଆଜି ବେଶ୍ୟାଘରେ, ମୁସଲମାନ ଓ ଖ୍ରୀଷ୍ଟାନ ସଂପ୍ରଦାୟରେ ତାର କଳନା କରୁଛି କିଏ ? ସର୍ବୋପରି କେତେ ଯେ ଅନାହାରରେ ନିରାଶ୍ରୟ ହୋଇ କେଉଁ ବାଟଘାଟରେ ଗଛମୂଳରେ ପ୍ରାଣ ଛାଡ଼ୁଛନ୍ତି ସେମାନଙ୍କ ନିଶ୍ୱାସ ପଡ଼ିବ କାହା ଉପରେ ? ଏଥିପାଇଁ କି ପିତାମାତା ଝିଅକୁ ଜନ୍ମ ଦିଅନ୍ତି ? ବିଧବା ଝିଅର ପିତାମାତାମାନେ, ବିଧବା ଝିଅକୁ ବିବାହ ନ ଦେଲେ ତୁମ୍ଭପରେ ସେମାନଙ୍କ ଅବସ୍ଥା ଗାଉଣୀ ଗାଇଲେ ସରିବ ନାହିଁ।" ଏହି ଦୀର୍ଘ ବିବରଣୀରେ ଜୟମଙ୍ଗଳ ଓଡ଼ିଶାର ସମାଜରେ ବିଧବା ବିବାହର ଆବଶ୍ୟକତା ସଂପର୍କରେ ଯଥେଷ୍ଟ ସୂଚନା ଦେଇଥିଲେ।

ବିଧବା ବିବାହ ସହାୟକ ସଭାର ସଂପାଦକ ହିସାବରେ ବିଧବା ବିବାହ ସଂପର୍କରେ ଏକ ସ୍ପଷ୍ଟୀକରଣ ଦେଇ ଉତ୍କଳ ଦୀପିକାରେ ଜୁଲାଇ ୧୮, ୧୯୨୫ରେ ଲେଖିଥିଲେ : "ଯେଉଁମାନଙ୍କର ସ୍ତ୍ରୀ ଅଛନ୍ତି ଏବଂ ଯେଉଁମାନଙ୍କର ବୟସ ଅଧିକ ସେମାନଙ୍କ ବିବାହ ନିମନ୍ତେ ଆୟୋଜନ କରିବା ଠିକ୍ ନୁହେଁ। କେତେକ ଜଣ ମାଟ୍ରିକ ପାସ୍ କରା ଯୁବକ ଏପରି ବିଧବାର ବିବାହ କରିବେ, ଯାହାଙ୍କ ଅଭିଭାବକ ସେମାନଙ୍କର ଉଚ୍ଚ ଶିକ୍ଷାର ଖର୍ଚ୍ଚ ବହନ କରିବେ। ଏପରି କୌଣସି ବିଧବାର ଅଭିଭାବକ ଅଛନ୍ତି କି ? ଯେଉଁମାନେ ଶିକ୍ଷିତା ଯୁବତୀ ବିଧବାର ବିବାହ କରିବେ ସେମାନେ ଅନ୍ୟ ଦେଶ ଓ ଅନ୍ୟ ଜାତିରେ ବିବାହ କରିବାକୁ ପ୍ରସ୍ତୁତ ହେବେ କି ? ତ୍ୟାଗ ସ୍ୱୀକାର କରି ସାହସ ଧରି ଅଗ୍ରସର ନ ହେଲେ ସମାଜର ଜଡ଼ତା ଭାଙ୍ଗିବ ନାହିଁ କି କଳଙ୍କ ଘୁଞ୍ଚିବ ନାହିଁ। ଏଣେ ଯେଉଁମାନେ ବାଲ୍ୟ ବିଧବାର

ବିବାହ ଦେବାକୁ କହନ୍ତି ସେମାନଙ୍କୁ କୌଣସି ଏକ ବିଧବାଶ୍ରମରେ ରଖି ଶିକ୍ଷା ଦୀକ୍ଷା ଦିଅନ୍ତୁ। ଯେଉଁମାନେ ବିଧିପୂର୍ବକ ଚିରଦିନ ବିଧବା ରହିବେ ସେମାନଙ୍କୁ ପୁନର୍ବିବାହ ନିମନ୍ତେ ବିଶେଷ ଅନୁରୋଧ କରିବା ଅନୁଚିତ। ତେବେ ସେମାନେ ମଧ୍ୟ ଆଶ୍ରମରେ ରହି ପବିତ୍ର ଭାବେ ଜୀବନ କାଟିବା ଉଚିତ।"

୧୯୨୬ ବେଳକୁ ବିଧବା ବିବାହ ପ୍ରତି ଜନସମର୍ଥନକୁ ଲକ୍ଷ୍ୟ କରି ଜୟମଙ୍ଗଳ ଅତିରିକ୍ତ ଉତ୍କଳ ଦୀପିକାରେ ଏପ୍ରିଲ୍ ୨୪, ୧୯୨୬ରେ ଏ ସଂପର୍କରେ ଏକ ଚମତ୍କାର ବିବୃତ୍ତି ଦେଇଥିଲେ। ସେଥିରେ ସେ ଲେଖିଥିଲେ "ଦିନ ଫେରିଛି। ଯେଉଁ ବିଧବା ବିବାହ କଥା ମୁଖରେ ଧରିବା ପାପ ବୋଲି ବିବେଚିତ ହେଉଥିଲା ତାହାର ଅନୁଷ୍ଠାନ କରିବାକୁ ଆଜି କେତେ ଜଣ ଅଗ୍ରସର ହେଲେଣି। ଏତିକି ବେଳେ କେବଳ ଜଣେ କର୍ମବୀର ଉତ୍କଳରେ ନବଯୁଗ ଆଣି ଦେଇପାରେ। ହିସାବ ବୁଦ୍ଧିରେ ପରିଚାଳିତ ହେଉଥିବା ଯାଏ କେହି କର୍ମବୀର ହୋଇପାରିବେ ନାହିଁ। ଖବରକାଗଜ ମାନଙ୍କରେ ଏ ବିଷୟରେ କେତେ ଲୋକ କେତେ ପ୍ରକାର ପ୍ରତିଜ୍ଞା କଲେଣି। ସେଥିରୁ କିନ୍ତୁ ଜଣେ କେହି ଏ ପର୍ଯ୍ୟନ୍ତ ପ୍ରତିଜ୍ଞା ପାଳନ କରିଥିବା ଖବର ମିଳେ ନାହିଁ। ବିଧବା ବିବାହ ଅନୁମତି ମୂଳରୁ ମିଳିଯିବ ବୋଲି କିଏ ଅପେକ୍ଷା କରି ବସିଛନ୍ତି। ସ୍ୱଗୋତ୍ର ସ୍ୱକୁଳରୁ ବିଧବା କନ୍ୟା ପାଇବେ ବୋଲି କାହାର ଆଶା, କିଏ ବା ବିବାହ ବେଳେ କିଛି ସଂପତ୍ତି ପାଇବେ ବୋଲି ଭାବିଛନ୍ତି। ଏସବୁ ହେଲେ ବିଧବା ବିବାହ ପ୍ରଚଳନ ହେବ। କିନ୍ତୁ କର୍ମବୀର ଏପରି କାହାର ଅପେକ୍ଷାରେ ରହେ ନାହିଁ। ବିଧବାକୁ ଉଦ୍ଧାର କରିବା ନିମନ୍ତେ ବିବେକର ଡାକ ଶୁଣିବା କ୍ଷଣି ସେ ଜାତି ଅଜାତି, ଦେଶ ବିଦେଶ, ଧନ ନିର୍ଦ୍ଧନ ବିଚାର ନ କରି ଯେଉଁଠାରେ ପାଇବ ସେଠାରେ ଗୋଟିଏ ବିଧବାକୁ ବିବାହ କରି ନିଏ। କ୍ରମେ ଜାତିର ଚୈତନ୍ୟ ଉଦୟ

ହୁଏ। ସଂସ୍କାରକକୁ ସର୍ବଦା ଦୁଃଖ ବିପତ୍ତି ବରଣ କରିନେବାକୁ ହୁଏ। କେତେ ଜଣ କାର୍ଯ୍ୟ କରି ନ ଗଲେ କୁଳର ଜଡ଼ତା କେବେ ଭାଙ୍ଗିବ ନାହିଁ। ସ୍ୱଜାତି ସ୍ୱଗୋତ୍ରରେ ବିବାହ କର କିମ୍ବା ବିଜାତି ବିଦେଶରୁ କନ୍ୟା ଆଣ ତୁମ୍ଭେ ଯଦି ସଂସ୍କାରକ ତୁମ୍ଭେ ଏକ ଘରିକିଆ ହୋଇ ରହିବ କ୍ରମେ ତୁମ୍ଭ ସାଥିରେ ଲୋକ ମିଶିବେ। ସମାଜଠାରୁ ନିର୍ଯ୍ୟାତନା ଭୋଗୀ ଦରିଦ୍ର ହୋଇ ରହ; ଯଦି ସମାଜ ସଂସ୍କାର ସ୍ପୃହା ପ୍ରାଣରେ ରହିଛି ତୁମ୍ଭେ ଦିନେ ସମାଜର ନେତା ହୋଇ ଠିଆ ହେବ।"

ସଂସ୍କାର ଓ ସେବାସଂଘ ବ୍ରହ୍ମପୁରରେ ଥିବା ଏକ ଅନୁଷ୍ଠାନରେ ପରିଚାଳକ ହିସାବରେ ରଥ ବିଧବା ବିବାହ ପ୍ରତି ୧୯୨୬ରେ ବହୁ ଗୁରୁତ୍ୱ ଦେଇ କାର୍ଯ୍ୟ କରିଥିଲେ। ସେତେବେଳେ ଓଡ଼ିଶାର ସୁପରିଚିତ ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କ ସଂପାଦନାରେ ସଂସ୍କାର ନାମକ ମାସିକ ପତ୍ରିକା ୧୯୨୬ ଏପ୍ରିଲ ମାସରୁ ପ୍ରକାଶ ପାଇଥିଲା। ଏଥିରେ ସମାଜ ସଂସ୍କାରକ ବିଷୟକ ପ୍ରବନ୍ଧମାନ ପ୍ରକାଶ ପାଉଥିଲା। ଜୟମଙ୍ଗଳ, ସଂସ୍କାର ଓ ସେବାସଂଘ ବ୍ରହ୍ମପୁରର ପରିଚାଳକ ହିସାବରେ ଏହାର ପ୍ରସାରଣ ପାଇଁ ବହୁ ଉଦ୍ୟମ କରିଥିଲେ। (ଉତ୍କଳ ଦୀପିକା, ମେ ୧୩, ୧୯୨୬) ସଂସ୍କାର ଓ ସେବାସଂଘରେ ଅନାଥ ବାଳିକାମାନଙ୍କର ସୁରକ୍ଷା ଓ ଶିକ୍ଷାର ବ୍ୟବସ୍ଥା, ପାନ୍ଥ ଅତିଥିମାନଙ୍କର ସତ୍କାର, ଅସହାୟା ବିଧବାମାନଙ୍କୁ ଆଶ୍ରୟ ଦାନ, ବିବାହ ଇଚ୍ଛା କରିବା ବିଧବାମାନଙ୍କ ପାଇଁ ପୁର୍ନବିବାହ ଆୟୋଜନ, ଯୁବତୀ ବିବାହ ପ୍ରଚଳନ, ଅସ୍ପୃଶ୍ୟ ଅନ୍ତ୍ୟଜ ଜାତିର ଉଦ୍ଧାର, ଜୀବହିଂସା ନିବାରଣ ଓ ନିରାମିଷ ଭୋଜନର ପ୍ରବର୍ତ୍ତନ, ଈଶ୍ୱର ନାମରେ କ୍ଷୁଦ୍ର ଦେବଦେବୀ ଓ ପିତୁଳା ପୂଜା ବଦଳରେ ନିରାକାର ବ୍ରହ୍ମୋପାସନାର ପ୍ରଚାର ଇତ୍ୟାଦି ସମାଜ ସଂସ୍କାର କରିବାକୁ ହେଉଥିଲା। ଗୋରକ୍ଷାଶ୍ରମ (ରସଲକୋଣ୍ଡା)ର ଅନ୍ତରଙ୍ଗ ସଭା ହିସାବରେ ସଂସ୍କାର ଓ ସେବାସଂଘ ବ୍ରହ୍ମପୁରରେ ପ୍ରତିଷ୍ଠା

ହୋଇ ରଥଙ୍କ ସୁପରିଚାଳନାରେ ବେଶ୍ ଅଗ୍ରଗତି କରିଥିଲା। ୧୯୨୬ ବେଳକୁ ଏହା ବେଶ୍ ସକ୍ରିୟ ଥିଲା। ଶ୍ରୀବତ୍ସ ପଣ୍ଡା ଗୋରକ୍ଷାଶ୍ରମ (ରସୁଲକୋଣ୍ଡା) ର ମ୍ୟାନେଜର୍ ଥିଲେ ଏବଂ ରଥଙ୍କର ପ୍ରଧାନ ସହଯୋଗୀ ଥିଲେ। (ଉତ୍କଳ ଦୀପିକା, ଜୁନ୍ ୧୯, ୧୯୨୬)

୧୯୨୬ ସେପ୍ଟେମ୍ବର ୧୨ ତାରିଖରେ ଗଂଜାମ ବୋଇରାଣୀଠାରେ ସଂସ୍କାର ଓ ସେବାସଂଘ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ହୋଇଥିଲା। ଏଥିରେ ଗଙ୍ଗାଧର ପ୍ରହରାଜ ମହାପାତ୍ର, ପିତାମ୍ବର ମିଶ୍ର, ଦିବାକର ଦାସ, ନୀଳକଣ୍ଠ ମିଶ୍ର, ଗୋବିନ୍ଦ ପାଣି, ବୀରଭଦ୍ର ପାଣି ପ୍ରଭୃତି ପଣ୍ଡିତ ଗଣ ଏବଂ ଜୟମଙ୍ଗଳ ରଥ ମଧ୍ୟ ଯୋଗ ଦେଇଥିଲେ। ଏହି ସେବାସଂଘ ଚେଷ୍ଟାରେ ଉତ୍କଳ ମହିଳା ସମ୍ମିଳନୀ ପ୍ରତିଷ୍ଠା ହୋଇଥିଲା। ବ୍ରହ୍ମପୁର ସୁରୋଳାଠାରେ ଅନୁନ୍ନତ ଜାତିର ପିଲାମାନଙ୍କ ପାଇଁ ଏହି ସଂଘ ଦ୍ୱାରା ବିଦ୍ୟାଳୟ ସ୍ଥାପନ କରାଯାଇଥିଲା। ଅଛୁଆ ଜାତି (ଦଳିତ ଜାତି) ମଧ୍ୟରେ ନବଜାଗରଣ ଅଣାଇ ସେମାନେ ଯେପରି ଅନ୍ୟାନ୍ୟ ଜାତିଙ୍କ ସହିତ ସକଳ କ୍ଷେତ୍ରରେ ସମାନ ଅଧିକାର ଲାଭ କରିବେ, ତାହାର ଆୟୋଜନ କରାଯାଇଥିଲା। ଏହି ସଂଘ ମାଧମରେ ଉତ୍କଳର ସୁବିଖ୍ୟାତ ସମାଜ ସଂସ୍କାରକ ଉତ୍କଳ ସାହିତ୍ୟର ସୁଯୋଗ୍ୟ ସଂପାଦକ ବିଶ୍ୱନାଥ କର ଏହି ସମ୍ମିଳନୀରେ ଜୟମଙ୍ଗଳଙ୍କ ଆହ୍ୱାନ କ୍ରମେ ଯୋଗ ଦେଇଥିଲେ। ରଥ ଏହି ସମ୍ମିଳନୀରେ ଏକ ପ୍ରସ୍ତାବରେ କହିଥିଲେ - ଏ ଦେଶରେ କେତେକ ଜାତିରେ ଅପରିଣତ ବୟସ୍କା ବାଳିକା ଓ ଯୁବତୀଙ୍କୁ ବିଧବା ନାମରେ ରଖାଯାଇ ସେମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରାଯାଉଥିବା ଏ ସମ୍ମିଳନୀ ହୃଦୟଙ୍ଗମ କରି ସେମାନଙ୍କର ପୁନର୍ବିବାହର ଆୟୋଜନ ନିମନ୍ତେ ବିବିଧ ଉପାୟ ଅବଲମ୍ବନ କରିବାକୁ ସ୍ଥିର କରନ୍ତୁ। ଏଥିରୁ ରଥଙ୍କ ବିଧବା ବିବାହ ସଂପର୍କିତ ପଦକ୍ଷେପ ଏବଂ ଉଦ୍ୟମର ସୂଚନା ସଂଗ୍ରହ କରାଯାଇପାରେ।

ଗୋରକ୍ଷା ଓ ଗୋସେବା ଶ୍ରୀବତ୍ସ ପଣ୍ଡାଙ୍କ ପରି ଜୟମଙ୍ଗଳ ରଥଙ୍କର ୧୯୨୫ରୁ ୧୯୨୬ରେ ବ୍ୟାପକ ସମାଜ ସଂସ୍କାର କାର୍ଯ୍ୟକ୍ରମର ଏକ ବିଶିଷ୍ଟ ଅଂଗ ଥିଲା। ସେତେବେଳେ ଦେଉଳ ତୋଳିବା କିମ୍ବା ପୋଖରୀ ଖୋଳିବାଠାରୁ ଗୋରକ୍ଷା ଓ ଗୋସେବା ଅଧିକ ଧର୍ମବୋଲି ସଂସ୍କାରକମାନେ ଚିନ୍ତା କରୁଥିଲେ। ଶ୍ରୀବତ୍ସ ପଣ୍ଡା ଉତ୍କଳ ଦୀପିକାରେ ମାର୍ଚ୍ଚ ୭, ୧୯୨୫ରେ ଏ ସଂପର୍କରେ ଲେଖିଥିଲେ "ଗୋମାତା ପ୍ରତ୍ୟକ୍ଷ ଦେବତା। ଖାଲି ଘାସ ପାଣି ଖାଇ ଅମୃତ ସମାନ କ୍ଷୀର ଦିଅନ୍ତି। ଗୋଟିଏ ଗାଈ କୋଟିଏ ପ୍ରାଣୀ ପାଇଁ ଆହାର ଯୋଗାଇ ପାରେ। ଗୋ ସେବାରୁ ବଳି ପୁଣ୍ୟ ନାହିଁ। ଗୋହତ୍ୟାରୁ ବଳି ପାପ ନାହିଁ। ଗୋରକ୍ଷା ଗୋ ସେବା ମନୁଷ୍ୟର କର୍ତ୍ତବ୍ୟ - ପୁଣି ହିନ୍ଦୁ ଧର୍ମର ମୂଳମନ୍ତ୍ର।" ସେଥିପାଇଁ ବେଲଗୁଣ୍ଠା ଗୋରୁହାଟ ସମୀପ ତନରଡା ଗ୍ରାମ ନିକଟ ସରକାରୀ ଆମ୍ବତୋଟା ପାଖରେ ୯ ଏକର ଭୂମିର ପଟ୍ଟା ନେଇ ତହିଁରେ ଗୋଶାଳା ଓ ଆଶ୍ରମ ଘର ସେ ତୋଳାଇଲେ। ଗୋରକ୍ଷା ଆଶ୍ରମ ନିର୍ବାହ ପାଇଁ ପାଖରେ ଥିବା ବାଣତୁମ୍ବ ଗ୍ରାମରେ ୩୦ ଏକର ଜମି ଖଂଜା ହୋଇଥିଲା। ଏହି କାର୍ଯ୍ୟରେ ଜୟମଙ୍ଗଳ ସେତେବେଳେ ମଧ୍ୟ ଅଣ୍ଟାଭିଡ଼ି ଉଠିଥିଲେ। ଜୟମଙ୍ଗଳ ଗୋହତ୍ୟା ନିବାରଣ ପାଇଁ ବାରଂବାର ନିବେଦନ କରିଥିଲେ। ସଂସ୍କାର ଓ ସେବାସଂଘର ପରିଚାଳକ ଥିବା ସମୟରେ ସେ ଏହି ପ୍ରସଙ୍ଗ ଉପରେ ବେଶ୍ ଗୁରୁତ୍ୱ ଦେଇଥିଲେ। ସେତେବେଳେ ଗୋରକ୍ଷାଶ୍ରମକୁ କେହି କେହି ଏକ ସାଂପ୍ରଦାୟିକ ଅନୁଷ୍ଠାନ ବୋଲି ମନେ କରୁଥିଲେ। ଜୟମଙ୍ଗଳ ଏହାର ବିପକ୍ଷରେ ସ୍ୱର ଉଠାଇଥିଲେ। ତାଙ୍କ ମତରେ 'ଗୋ'ର ଅର୍ଥ ପୃଥିବୀ - ଯାହାଦ୍ୱାରା ପୃଥିବୀର ସୁରକ୍ଷା ହେବ। ସେପରି କାର୍ଯ୍ୟସବୁ ଏ ଆଶ୍ରମ ପକ୍ଷରୁ କରାଯାଉଥିବାର ସେ ଯୁକ୍ତି ବାଢ଼ିଥିଲେ। ଗୋରକ୍ଷା ଆଶ୍ରମ ଗୋଶାଳା ପ୍ରତି ବିଶେଷ ଦୃଷ୍ଟି ଦେଉଥିଲା। ତାଙ୍କ ମତରେ ଗାଈଗୋରୁ ଛଡ଼ା ମଇଁଷି, ଛେଳି, ମେଣ୍ଢା,

କୁକୁର ବିରାଡ଼ି ଆଦି ଅନେକ ଜୀବଜନ୍ତୁ ଏଠାରେ ପ୍ରତିପାଳିତ ହେବାର ବ୍ୟବସ୍ଥା ଥିଲା। ଯେ କୌଣସି ପ୍ରାଣୀ ବିପନ୍ନ ହୋଇଥିବାର ଦେଖାଗଲେ ତାକୁ ଏଠାରେ ରକ୍ଷା କରିବା ପାଇଁ ଯଥାସାଧ୍ୟ ଯତ୍ନ କରାଯାଏ ଏବଂ ଜୀବଜନ୍ତୁଙ୍କୁ କିପରି ପୋଷିପାଳି ରଖିବାକୁ ହୁଏ ତାହା ପ୍ରଚାର ମଧ୍ୟ ଏଠାରେ କରାଯାଏ - ଏହିପରି ଯୁକ୍ତିରେ ସେ ଗୋରକ୍ଷାଶ୍ରମର ମହତ୍ତ୍ୱ ପ୍ରତିପାଦିତ କରିଥିଲେ। ଗୋରକ୍ଷାଶ୍ରାମର ଅନ୍ୟାନ୍ୟ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟମାଳା ମଧ୍ୟରେ - ଜୀବହତ୍ୟା ନିବାରଣ କରିବା, କ୍ଷୁଦ୍ର ଦେବଦେବୀ ପୂଜା ଭାଙ୍ଗି ଲୋକଙ୍କ ମଧ୍ୟରେ ବ୍ରହ୍ମ ଉପାସନାର ପ୍ରବର୍ତ୍ତନ କରିବା, ଆମିଷାଦିର ଛଡ଼ାଇ ଶାକାହାର ପ୍ରଚଳନ କରାଇବା, ଅସହାୟ ବିଧବାମାନଙ୍କୁ ବାସ ଦେଇ ବିବାହୋତ୍ସୁକା ବିଧବାମାନଙ୍କୁ ପୁନର୍ବିବାହର ଆୟୋଜନ କରିବା, ଅରକ୍ଷିତ ଅନାଥ ବାଳକବାଳିକାମାନଙ୍କୁ ରକ୍ଷା କରି ସେମାନଙ୍କର ଭବିଷ୍ୟତ ଜୀବନୋପାୟର ବ୍ୟବସ୍ଥା କରିବା, ତଥାକଥିତ ଅଛୁବଜାତି, ପ୍ରପୀଡ଼ିତ ମହିଳାସମାଜ, ଲକ୍ଷ୍ୟଭ୍ରଷ୍ଟ ଛାତ୍ରମଣ୍ଡଳୀ ଓ ଧ୍ୱଂସାଭିମୁଖୀ ପଲ୍ଲୀମାନଙ୍କର ଉଦ୍ଧାର ପ୍ରଭୃତି ସେ ଗ୍ରହଣ କରିଥିଲେ। (ଉତ୍କଳ ଦୀପିକା, ମେ ୮, ୧୯୨୬)

ତାଙ୍କ ଆଲୋଚନା "ହିମାଳୟରେ ଗୋମାତା" ୧୯୨୫ ଜୁଲାଇ ୪ର ଉତ୍କଳ ଦୀପିକାରେ ପ୍ରକାଶ ପାଇଥିଲା। ସେଥିରେ ସେ ଗୋସେବା ପ୍ରତି ଲୋକମାନଙ୍କର ବିମୁଖତା ଉପରେ ବିଶେଷ ଦୃଷ୍ଟି ଦେଇ ଆଲୋଚନା ପ୍ରକାଶ କରିଥିଲେ। ସେଥିରେ ସେ ଲେଖିଥିଲେ - "ହିମାଳୟର ପାଦଦେଶରୁ ଦେଖି ଆସୁଛି ଗୋମାତା ହୃଷ୍ଟ, ପୁଷ୍ଟ, ବଳିଷ୍ଠ - ଚକ୍ଷୁରେ ଯେପରି କି ଗୋଟିଏ ଆନନ୍ଦର ଆଭା ଖେଳି ବୁଲୁଛି। ଆମ୍ଭ ପ୍ରଦେଶରେ କେତେ ରାଜାଘର ଗାଈଗୋରୁ ଦେଖି ମନେ କରୁଥିଲି କେଡେ ପୃଥୁଳ। କିନ୍ତୁ ଏଠାରେ ସାଧାରଣ ଭାବେ ଗୋଜାତିର ଯେ ଅବସ୍ଥା ତା ତୁଳନାରେ ରାଜାଘର ଗାଈଗୋରୁ କିଛି ନୁହଁନ୍ତି କହିଲେ ଚଳେ।

ଗ୍ରୀଷ୍ମ ଅବକାଶରେ ଓକିଲ, ଶିକ୍ଷକ, ଛାତ୍ରମାନଙ୍କୁ କିପରି ଦେଶ କାମରେ ବିନିଯୋଗ କରାଯିବ ତାହାର ଏକ ଚମତ୍କାର ବିବରଣୀ ସେ ଉତ୍କଳ ଦୀପିକାର ଏପ୍ରିଲ ୨୫, ୧୯୨୫ ସଂଖ୍ୟାରେ ପ୍ରକାଶ କରିଥିଲେ। ସେଥିରେ ସେ ଲେଖିଥିଲେ – "ଗ୍ରୀଷ୍ମ ଅବକାଶ ସକାଶେ ଏବେ ସ୍କୁଲ କଲେଜ, କୋର୍ଟ କଚେରୀ ବନ୍ଦ, ଶିକ୍ଷକ, ଛାତ୍ର, ଓକିଲାଦିଙ୍କୁ ଅବସର। ଅନେକ ହୁଏତ ସହର ଛାଡ଼ି ପଲ୍ଲୀକୁ ଯିବେ। ଏହି ଅବସରରେ ମୁଁ ସେମାନଙ୍କୁ ଜଣାଇ ଦେଉଛି ଯେ ଦେଶକାମ ବୋଲି ଯାହା ସେମାନେ ଅନେକ ସମୟରେ ଶୁଣନ୍ତି ତାହା କରିବା ସୁଯୋଗ ଏବେ ସେମାନଙ୍କର ଆସିଛି। ସ୍ୱାଧୀନଜାତିର ସରକାର ଏହାର ଭାର ଗ୍ରହଣ କରେ ଏବଂ ସଂଗତିସଂପନ୍ନ ଜାତି ଏଥିପାଇଁ ପୃଥକ କର୍ମୀ ନିଯୁକ୍ତ କରି ରଖେ। ଅନ୍ୟାନ୍ୟ ସ୍ୱାଧୀନ ଦେଶର କଥା ଛାଡ଼, ଆମ୍ଭ ଏହି ଭାରତର ବିଭିନ୍ନ ପ୍ରଦେଶରେ ମଧ୍ୟ ଅନେକ ଦିନ ହେଲା ଜାତୀୟ ଭାବ ଜାଗ୍ରତ ହୋଇ ନାନା ପ୍ରକାର ଜାତି ସଂଗଠନ କାମ ଆରମ୍ଭ କରାଗଲାଣି। କିନ୍ତୁ ଓଡ଼ିଆର ଜାତୀୟ ଭାବ ସୁଦ୍ଧା ଅଦ୍ୟାପି ଜାଗ୍ରତ ହୋଇନାହିଁ। ସଂଗଠନ କାମ ତ ଦୂରର କଥା। ସୁତରାଂ ଅନ୍ତତଃ ସମ୍ବାଦପତ୍ରର ବହୁଳ ପ୍ରଚାର ବର୍ତ୍ତମାନ ଏକାନ୍ତ ଆବଶ୍ୟକ। ଶିକ୍ଷକ, ଛାତ୍ର, ଓକୀଲ ଆଦି ନିକଟରେ ମୋର ଆଜି ଏହି ନିବେଦନ ଯେ ପ୍ରତ୍ୟେକ ଗ୍ରୀଷ୍ମାବକାଶରେ ନିକଟବର୍ତ୍ତୀ ଗ୍ରାମମାନଙ୍କୁ ଯାଇ ଦେଶର ବର୍ତ୍ତମାନ ଅବସ୍ଥା ବୁଝାଇ ଲୋକଙ୍କ ମଧ୍ୟରେ ଜାତୀୟ ଭାବ ଜାଗ୍ରତ କରାଇବାକୁ ଚେଷ୍ଟା କରିବେ ଏବଂ ସମ୍ବାଦପତ୍ରର ଉପଯୁକ୍ତ ପାଠକ ଓ ଗ୍ରାହକ ସଂଗ୍ରହ କରିବେ। ଏହା ପ୍ରଥମ କାର୍ଯ୍ୟ। ଦ୍ୱିତୀୟତଃ, ବୁଝିବାକୁ ହେବ ଯେ ଉତ୍କଳ ମହାଭାରତୀୟ ଆନ୍ଦୋଳନରେ କେତେ ବର୍ଷ ହେଲା ଯୋଗ ଦେଇଥିଲେ ସୁଦ୍ଧା ତାହାର ଦୁଃଖ ଦୁର୍ଦ୍ଦଶାର ବିଶେଷତ୍ୱ ଅଛି। ଭାରତର ଅନ୍ୟ କୌଣସି ପ୍ରଦେଶ ଉତ୍କଳ ପରି ଶାସନ ସୂତ୍ରରେ ଛିନ୍ନ

ବିଚ୍ଛିନ୍ନ ନୁହେଁ। ଏଠାପରି ବନ୍ୟା ଦୁର୍ଭିକ୍ଷ, ମେଲେରିଆ ଆଦି ନାନା ପ୍ରକାର ଦୁର୍ଘଟଣା ଅନ୍ୟ କୌଣସିଠାରେ ନାହିଁ। ଖାଇବାକୁ ନପାଇ ବହୁତ ଲୋକ ସ୍ୱଦେଶ ଛାଡ଼ି ବିଦେଶକୁ ଚାଲିଯିବା ଓଡ଼ିଆର ଲଲାଟଲେଖନ ବୋଲି ମନେହୁଏ ଏବଂ ସର୍ବୋପରି ଧର୍ମନୀତି, ସମାଜନୀତି ଓ ରାଜନୀତିର ଦୈନନ୍ଦିନ ବିକାଶ ଉପଲବ୍ଧି କରିବା ସୁଯୋଗ ଓଡ଼ିଆର ନାହିଁ। ଏପରି ସ୍ଥଳେ ଅନ୍ୟାନ୍ୟଙ୍କ ଦେଶକାମଠାରୁ ଓଡ଼ିଆଙ୍କ ଦେଶକାମ ଯେ ଭିନ୍ନ ଆକାର ଧାରଣ କରିବ ଏଥିରେ ସନ୍ଦେହ ନାହିଁ। ସୁତରାଂ ଅନ୍ୟାନ୍ୟ ପ୍ରଦେଶର କାମ ସହିତ ଉତ୍କଳ ପ୍ରଦେଶର କାମ ତୁଳନା କରି ହତାଶ ନ ହୋଇ ନିତ୍ୟ ନବୋତ୍ସାହ ଘେନି କର୍ମକ୍ଷେତ୍ରରେ ପ୍ରବୃତ୍ତ ହେବାକୁ ହେବ। ଉତ୍କଳର କୌଣସି ଦିଗରେ ଅଦ୍ୟାପି ଶୃଙ୍ଖଳାବଦ୍ଧ କାମ ପ୍ରତିଷ୍ଠିତ ହୋଇନାହିଁ। ଅଥଚ ସବୁ ଦିଗରେ ସାଙ୍ଗୋପାଙ୍ଗ କାମ ନ ଚାଲିଲେ ରକ୍ଷା ନାହିଁ। ଅତଏବ ଯେଉଁଠାରେ ଯେଉଁ ସମୟରେ ଯେଉଁ କାମ କରିବା ପାଇଁ ଅନୁକୂଳ ବାୟୁମଣ୍ଡଳ ପରିଦୃଷ୍ଟ ହେବ, ସେହିଠାରେ ସେହି ସମୟରେ ସେହି କାମ ଆରମ୍ଭ କରିବାକୁ ହେବ। ଅନୁଷ୍ଠାନ ସ୍ଥାୟୀ ହେବ ନାହିଁ ବୋଲି ଭୟ କରିବା ଅନୁଚିତ। କାରଣ ଅନୁଷ୍ଠାନ ଯେତେ ଅଳ୍ପ ସମୟ ରହୁ ମଧ୍ୟ ତାହାର ମୂଲ୍ୟ ଅଛି। ଗ୍ରୀଷ୍ମ ଅବକାଶରେ କି କାମରେ ହାତ ଦିଆଯାଇପାରେ ତାହାର ଏକ ତାଲିକା ସେ ପ୍ରକାଶ କରିଥିଲେ। ଏହାର ପରିବର୍ତ୍ତନ ଓ ପରିବର୍ଦ୍ଧନ କରିବା ଭାର କର୍ମୀମାନଙ୍କ ହାତରେ ନ୍ୟସ୍ତ କରିଥିଲେ। ସେହି ତାଲିକାଟି ନିମ୍ନରେ ଉଦ୍ଧାର କରାଯାଇଛି;

୧. ଯୁବକସଂଘ ଗଠନ କରି ଘରପୋଡ଼ି ଆଦି ଦୁର୍ଘଟଣାମାନଙ୍କରୁ ଲୋକଙ୍କୁ ଉଦ୍ଧାର କରିବା, ଗ୍ରାମର ଜଳ, ବାଟ, ଘାଟ ଆଦି ପରିଷ୍କାର କରିବା। ସରକାରୀ ସ୍ୱାସ୍ଥ୍ୟ ବିଭାଗ ଏ ଦିଗେ ସହାୟ ହୋଇପାରେ।

୨. ଅରକ୍ଷ ଅବସ୍ଥାରେ ଥିବା ଅନାଥ ବାଳକ ବାଳିକା ଓ ବିଧବାମାନଙ୍କୁ ସୁପରିଚାଳିତ ଆଶ୍ରମମାନଙ୍କରେ ଦେବା।

୩. ବିଦେଶକୁ ଯାଉଥିବା ଓଡ଼ିଆମାନଙ୍କୁ ସସ୍ତ୍ରୀକ ଯିବା ପାଇଁ ଅନୁରୋଧ କରିବା ଓ ବିଦେଶରୁ ସେମାନେ ଫେରିଲେ ଯେପରି ପ୍ରାୟଶ୍ଚିତ କରା ନ ହୁଏ ତାର ବ୍ୟବସ୍ଥା କରିବା।

୪. ପ୍ରାକୃତିକ ତଥା ରାଜନୈତିକ ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ ଉତ୍କଳ ପ୍ରଦେଶ ଗଠନର ଆବଶ୍ୟକତା ବୁଝାଇବା ଏବଂ ଯେଉଁଠାରେ ଓଡ଼ିଆ ଶିକ୍ଷାର ବ୍ୟବସ୍ଥା ନାହିଁ ଓ ଦଲିଲ ଦସ୍ତାବିଜ ଆଦି ଅନ୍ୟ ଭାଷାରେ ଲେଖାଯାଏ ସେଠାରେ ଅନ୍ତତଃ ଓଡ଼ିଆ ଚଟଶାଳୀ ପ୍ରତିଷ୍ଠା କରି ସେମାନଙ୍କ ଜାତୀୟତା ରକ୍ଷା କରିବା।

୫. ଭାଗବତ ମନ୍ଦିରରେ ରୀତିମତ ପୁରାଣ ପାଠ ଓ ପାଠାଗାର ପ୍ରତିଷ୍ଠାର ଆୟୋଜନ କରି ଖବରକାଗଜ, ସାହିତ୍ୟିକ ଓ ସାମାଜିକ ପ୍ରସଙ୍ଗମାନଙ୍କ ଆଲୋଚନାର ବ୍ୟବସ୍ଥା କରିବା।

୬. ଯୁବତୀ ବିବାହ ଓ ବିଧବା ବିବାହ ପ୍ରଚଳନ ଏବଂ ଅଛୁଆଁ ଜାତିର ଲୋକେ ଦେବାଳୟ, ସଭା ସମିତି, ଧର୍ମଶାଳା, ନାଟକ, କୂଅ ଆଦିରେ ଅନ୍ୟାନ୍ୟ ଜାତିଙ୍କ ସହିତ ଯେପରି ସମାନ ଅଧିକାର ଲାଭ କରନ୍ତି ତାହାର ଆୟୋଜିତ କରିବା। ବିଧବା ବିବାହ ସହାୟକ ସଭା ଓ ପତିତପାବନ ସମିତି ଏ ଦିଗରେ ସହାୟ ହେବ।

୭. ବିବାହବ୍ରତାଦିରେ ଯୌତୁକ, ନାଚ, ବାଣ, ବେଭାର ପୌରୋହିତ୍ୟାଦିର ବ୍ୟୟ ଲାଘବ କରିବାକୁ ପ୍ରଚାର।

୮. ଗୋହତ୍ୟା ନିବାରଣ କରିବା।

୯. ଅରଟ ଓ କପାଚାଷ ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା।

୧୦. ମାଦକଦ୍ରବ୍ୟ ଓ ଜୁଆଖେଳ ନିବାରଣ ଉପାୟ କରିବା ଏବଂ ସମବାୟ ଋଣ ସମିତି ସ୍ଥାପନ କରିବା।

ସଂସ୍କାର ଓ ସେବାସଂଘ ତରଫରୁ ପ୍ରକାଶିତ ରଥଙ୍କର ଏହି ବିବୃତ୍ତିରୁ ତାଙ୍କର ଗଠନାତ୍ମକ ଏବଂ ଉଗ୍ର ସଂସ୍କାରକ ମନର ପରିଚୟ ମିଳେ। ସଂସ୍କାର ଏବଂ ସେବାସଂଘର ପରିଚାଳକ ହିସାବରେ ଗ୍ରୀଷ୍ମ ଅବକାଶଭୋଗୀ ଶିକ୍ଷିତ ଯୁବକମାନଙ୍କୁ ୧୯୨୬ରେ ଗ୍ରୀଷ୍ମ ଅବକାଶରେ ମଧ୍ୟ କିପରି କର୍ମଠ ହେବାକୁ ହେବ ସେ ଉପଦେଶ ଦେଇ ବହୁ ପ୍ରସଙ୍ଗ ଉତ୍କଳ ଦୀପିକାରେ ଅବତାରଣା କରିଥିଲେ।

୧୯୨୫-୨୬ରେ ସୁରୋଳ ଅଞ୍ଚଳର ନାନାବିଧ ସମସ୍ୟା ସେ ଓଡ଼ିଶାର ଲୋକମାନଙ୍କ ଆଗରେ ଉପସ୍ଥାପନ କରିବାକୁ ଜଣେ ସଂସ୍କାରକ ହିସାବରେ ଆଗେଇ ଆସିଥିଲେ। ଗଂଜାମର ଏହି ଛୋଟଗ୍ରାମ ସୁରୋଳ ୧୯୨୪-୨୫ ଝଡ଼ ତୋଫାନରେ ଅବର୍ଣ୍ଣନୀୟ ଅବସ୍ଥା ଦେଇ ଗତି କରିଥିଲା। ସୁରୋଳର ପ୍ରାୟ ସମସ୍ତେ ଅନୁନ୍ନତ ଜାତିର ଲୋକ। ଧନରେ ମାନରେ ଏମାନେ ବଡ଼ ଦରିଦ୍ର। କିନ୍ତୁ କ୍ରମେ ଉନ୍ନତିର ପଥ ପରିଷ୍କାର ହୋଇଗଲା। ଏଠାରେ ବ୍ରହ୍ମୋପାସକ ମଣ୍ଡଳୀ ଗଠିତ ହୋଇଥିଲା। ଗ୍ରାମସଭା ବସିଥିଲା। କଂଗ୍ରେସ ଓ ହିନ୍ଦୁ ସଭାର କେତେକ ସଭ୍ୟ ହୋଇଗଲେ। ସେବା ଓ ସଂସ୍କାରର ବିବିଧ ପ୍ରକାର ଆୟୋଜନ ଚାଲିଲା। ୧୯୨୨ରୁ ୧୯୨୫ ମଧ୍ୟରେ ଓଡ଼ିଶାରେ କେତେ ପ୍ରକାର ଆନ୍ଦୋଳନ ହୋଇଥିଲା। କିନ୍ତୁ ସୁରୋଳରେ ସେସବୁର କିଛି ଚିହ୍ନ ନଥିଲା। ସୁରୋଳା ପରି ସ୍ଥାନରେ ସେବାସଂଘ, ନୀତି ବିଦ୍ୟାଳୟ ଓ ପତିତପାବନ ପାଠାଗାର ଇତ୍ୟାଦି ଅନୁଷ୍ଠାନମାନ ପ୍ରତିଷ୍ଠା କରିବା ପାଇଁ ସେତେବେଳେ ସେ ଉଦ୍ୟମ କରିଥିଲେ। ସେଥିପାଇଁ ବୁଦ୍ଧିଆ ବେହେରାଙ୍କ ନେତୃତ୍ୱରେ ସୁରୋଳା ଗ୍ରାମ ସଭା ଗଠନ କରି ସୁରୋଳାର ଉନ୍ନୟନ ମୂଳକ କାର୍ଯ୍ୟକ୍ରମ ପାଇଁ ଆଗେଇ ଯାଇଥିଲେ। ସେ ନିମନ୍ତେ ଆର୍ଥିକ ସାହଯ୍ୟ ମଧ୍ୟ ଓଡ଼ିଶାର ଜନସାଧାରଣଙ୍କଠାରୁ ଆଶ କରିଥିଲେ। (ଉତ୍କଳ ଦୀପିକା, ନଭେମ୍ବର ୬,

୧୯୨୬) ସୁରୋଳାଠାରେ ୧୯୨୬ରେ ଗୋଟିଏ ମଦଦୋକାନ ବସାଇବା ପାଇଁ ସରକାରୀ ସ୍ତରରେ ପ୍ରସ୍ତାବିତ ହୋଇଥିଲା। ଏଥିରେ ଜୟମଙ୍ଗଳ ବ୍ୟଥିତ ହୋଇ ସୁରୋଳା ସମ୍ମିଳନୀ ଡକାଇ ତାହାର ପ୍ରତିବାଦ କରିଥିଲେ। ଏହି କାର୍ଯ୍ୟରେ ଆଶା ସମ୍ବାଦପତ୍ରର ସଂପାଦକ ଶଶିଭୂଷଣ ରଥ, ସୁରୋଳାର କେ. ପୁରୁଷୋତ୍ତମ ରେଡ୍ଡୀ, ପି. ଶ୍ୟାମସୁନ୍ଦର ରାଓ ଏବଂ ବୁଦ୍ଧିଆ ବେହେରା ଜୟମଙ୍ଗଳଙ୍କୁ ପୂର୍ଣ୍ଣ ସମର୍ଥନ ଯୋଗାଇଥିଲେ। (ଉତ୍କଳ ଦୀପିକା, ଫେବୃଆରୀ ୨୦, ୧୯୨୬)

୧୯୨୬ରେ ଗଞ୍ଜାମ ଜିଲା କଂଗ୍ରେସ କମିଟି ସକ୍ରିୟ ଥିଲା। ଏହି କମିଟିରେ ଲିଙ୍ଗରାଜ ପାଣିଗ୍ରାହୀ ଓ ଜୟମଙ୍ଗଳ ରଥ ଉଭୟ ସହଯୋଗୀ ସଂପାଦକ ଥିଲେ। ଗଠନାତ୍ମକ କାର୍ଯ୍ୟକ୍ରମ ପାଇଁ ଜୟମଙ୍ଗଳ କମିଟିର ଅନ୍ୟାନ୍ୟ କର୍ମୀ ପ୍ରବୋଧ ଚନ୍ଦ୍ର ଚଟ୍ଟୋର୍ଯ୍ୟ, ନିରଞ୍ଜନ ପଟ୍ଟନାୟକ, ଶଶିଭୂଷଣ ରଥ, ଲାଲମୋହନ ପଟ୍ଟନାୟକ ଏବଂ ଈଶ୍ୱର ସାହୁ ପ୍ରଭୃତିଙ୍କର ସହାୟତା ଗ୍ରହଣ କରିଥିଲେ। (ଉତ୍କଳ ଦୀପିକା, ଏପ୍ରିଲ ୧୦, ୧୯୨୬)

୧୯୨୫ରେ ପ୍ରବାସୀ ଓଡ଼ିଆମାନଙ୍କର ସମସ୍ୟା ରଥଙ୍କର ଚିନ୍ତାରାଜ୍ୟକୁ ଆଚ୍ଛାଦିତ କରିଥିଲା। ଓଡ଼ିଶାରେ ଅର୍ଥାଭାବ ଦେଖି ବହୁ ସଂଖ୍ୟକ ଓଡ଼ିଆ ରେଙ୍ଗୁନ, କଲିକତା ପ୍ରଭୃତି ସ୍ଥାନକୁ ଊନବିଂଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ମଧ୍ୟରେ ଚାଲିଯାଉଥିଲେ। ବିଦେଶରେ ଏମାନଙ୍କର ଅର୍ଥୋପାର୍ଜନ କିଛି କମ୍ ନଥିଲା। ସୁଦୂର ବର୍ମାରେ ସୁଦ୍ଧା କେତେକ ଓଡ଼ିଆ ଜମିବାଡ଼ି, ବଗିଚା ଘର କରି ରହିଥିବାର କଥା ସେତେବେଳର ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଥିଲା। ସେହି ଓଡ଼ିଆମାନଙ୍କ ଅବସ୍ଥା କଥା ଚିନ୍ତା କରି ଜୟମଙ୍ଗଳ ବ୍ୟଥିତ ହୋଇ ଉତ୍କଳ ଦୀପିକାରେ ୧୯୨୫ ମେ ୨୩ ସଂଖ୍ୟାରେ ଲେଖିଥିଲେ - ଏମାନେ ସେଠାରେ ଉକ୍ତ ଦେଶୀୟ ସ୍ତ୍ରୀ ଘେନି ରହିଅଛନ୍ତି। ଏମାନଙ୍କର ଉତ୍କଳରେ ଥିବା ପରିବାର

ପ୍ରତି ଅନୁରାଗ ନାହିଁ। କୌତୁକ ପରବଶ ହୋଇ ଥରେ ଥରେ ଉତ୍କଳକୁ ଯାଆନ୍ତି ଏବଂ କେବେକେବେ ମନ ହେଲେ କେତୋଟି ଟଙ୍କା ପଠାଇ ଦିଅନ୍ତି। ଫଳତଃ ଉତ୍କଳ ହିଁ ଏମାନଙ୍କ ପକ୍ଷେ ପ୍ରବାସ। ଯେଉଁମାନେ ବିଦେଶରେ ଏପରି ଗୋଟିଏ ଗୋଟିଏ ସ୍ତ୍ରୀ ଧରି ଘରଦ୍ୱାର କରି ରହିନାହାନ୍ତି ସେମାନଙ୍କ ଧନସବୁ ନାନା ବେଶ୍ୟାଦ୍ୱାରରେ। ଓଡ଼ିଆଣିକୁ ବେଶ୍ୟା କରି ଆଣି ବର୍ମା, ବଂଗଦେଶ ପ୍ରଭୃତିରେ କେଉଁ କେଉଁଠାରେ ରଖାଯାଇଅଛି। ଓଡ଼ିଆ ଚାକର ଚୋର ବୋଲି କହିବା ପାଇଁ ଅନେକଙ୍କର କାରଣ ରହିଛି। ଏହି ଅଳ୍ପ ଦିନତଳେ କଲିକତାରେ ମୋହନ ଦାସ ନାମକ ଜଣେ ଚାକର ଏକ ଭଦ୍ରବ୍ୟକ୍ତିଙ୍କଠାରୁ ଅନେକ ଜିନିଷ ଚୋରିକରି ବାହାରି ଯାଉଥିବା ବେଳେ ଗ୍ରେପ୍ତାର ହେବାରୁ କଲିକତାର ସବୁ ଖବରକାଗଜରେ ଓଡ଼ିଆର ଦୁର୍ନାମ ରଟନ ହୋଇଥିଲା। ଏତେ ଧନ ଉପାର୍ଜନ କରି ଏମାନେ ଭଲ କରି ଖଦୀଖଣ୍ଡେ ପିନ୍ଧୁ ନାହାଁନ୍ତି କି କେଉଁଠାରେ କିପରି ବ୍ୟବହାର କରିବାକୁ ହେବ ଜାଣୁନାହାଁନ୍ତି। ସୁତରାଂ ଏମାନେ ସର୍ବତ୍ର ଘୃଣ୍ୟ। ସେଦିନ କଲିକତା ମିର୍ଜାପୁର ପାର୍କରେ ମହାତ୍ମାଗାନ୍ଧିଙ୍କ ସଭା ହେଉଥିବା ବେଳେ ମହାତ୍ମାଜୀଙ୍କ ଶିରୋପରି ଯେ ବୃକ୍ଷଶାଖା ତା ଉପରେ କେତେ ଜଣ ମଳିନ ବସନଧାରୀ ନିତାନ୍ତ ଅପରିଷ୍କୃତ ଲୋକ ବସିଥିଲେ। ତାହା ଦେଖି ସଭା ମଧ୍ୟରେ ଭଦ୍ରବ୍ୟକ୍ତିମାନେ କୁହାକୁହି ହେଉଥିଲେ ଯେ ଏପରି ସବୁ କୁତ୍ସିତ ଆଚରଣ କେବଳ ଓଡ଼ିଆର। ଏହାଶୁଣି କେଉଁ ଶିକ୍ଷିତ ଓଡ଼ିଆର ଦୁଃଖ ନ ହେବ ? ଏପରି ଘଟଣାସବୁ ପ୍ରତ୍ୟହ ଦେଖିବାକୁ ହୁଏ। ବଂଗହିନ୍ଦୁ ସଭାର ଫରିଦ୍‌ପୁର ଅଧିବେଶନରେ ଆଚାର୍ଯ୍ୟ ପ୍ରଫୁଲ ଚନ୍ଦ୍ର ରାୟ କହିଲେ ଯେ ଓଡ଼ିଆମାନେ ବହୁଧନ ବଂଗଦେଶରୁ ନିଜ ଦେଶକୁ ନେଇ ଯାଉଛନ୍ତି। କଲିକତାରେ ପାଚକ କାମ କରୁଥିବା ଓଡ଼ିଆ ବ୍ରାହ୍ମଣମାନେ ଆଚାର୍ଯ୍ୟ ରାୟଙ୍କୁ ଡମ, ଚମାର ପରି ଦିଶନ୍ତି ଏବଂ ସେମାନଙ୍କ ମଧ୍ୟରୁ ଶତକଡ଼ା ୯୫ ଜଣ ଯେ ନାନାବିଧ ସ୍ତ୍ରୀ ରୋଗରେ ପୀଡ଼ିତ ଥିବା ସେ ବୁଝିଛନ୍ତି। ଏହା ସଂପୂର୍ଣ୍ଣ

ମିଥ୍ୟା ନୁହେଁ। ପ୍ରବାସରେ ଏମାନେ ସସ୍ତ୍ରୀକ ନରହି ଓଡ଼ିଆ ଜାତି ନାମରେ ଏ କଳଂକ ଆଣୁଛନ୍ତି। ତେବେ ଏମାନେ ବା କଣ କରିବେ ? କୁସଂସ୍କାରାଚ୍ଛନ୍ନ ସମାଜ ହିଁ ଏଥିପାଇଁ ଦାୟୀ। ସମୁଦ୍ର ଯାତ୍ରାରୁ ଫେରିଲେ ପ୍ରାୟଶ୍ଚିତରେ ଧନମାନ କ୍ଷୟ କରିବାକୁ ବାଧ ହୁଅନ୍ତି। ଆଉ ସସ୍ତ୍ରୀକ ଯିବାକୁ ଏମାନଙ୍କ ସାହସ ହୁଏ ନାହିଁ। ବିଦେଶରୁ ଫେରିଲାବେଳକୁ ଦେଖନ୍ତି କାହାର ସ୍ତ୍ରୀ ପ୍ରକାଶ୍ୟରେ ଓ କାହାର ସ୍ତ୍ରୀ ଗୁପ୍ତ ଭାବରେ ଅନ୍ୟ ପୁରୁଷ ପ୍ରତି ଆସକ୍ତା। ଫଳତଃ ପରିବାରରେ ଅଶାନ୍ତି ଓ ଅଦାଲତରେ ମାଲିମୋକଦ୍ଦମା, ପ୍ରବାସରେ ପତି ଓ ସ୍ୱଦେଶରେ ପତ୍ନୀ ବ୍ୟଭିଚାରରେ ରତ ହୋଇ ଓଡ଼ିଆ ଜାତିକୁ କଳଂକିତ କରୁଅଛନ୍ତି।

ଶେଷରେ ଜୟମଙ୍ଗଳ ଅନୁରୋଧ କରିଥିଲେ ପ୍ରବାସୀ ଓଡ଼ିଆମାନଙ୍କୁ ସମାଜର ମିଥ୍ୟାବନ୍ଧନ ଛିନ୍ନ କରି ସସ୍ତ୍ରୀକ ବିଦେଶକୁ ଯାଇ ଓଡ଼ିଆ ପୁଣ୍ୟ ଚରିତ୍ର ବଳରେ ଅପର ଜାତିକୁ ମୁଗ୍ଧ କରୁ ଏବଂ ଏଥିପାଇଁ ଉତ୍କଳର ଭିତରେ ଓ ବାହାରେ ଶୀଘ୍ର ଧର୍ମ୍ମନୀତି ଶିକ୍ଷା ସଭ୍ୟତା ଆଦିର ପ୍ରଚାର ହେଉ।

୧୯୨୬ରେ କଂଗ୍ରେସ ସଂଗଠନ ସହିତ ଓଡ଼ିଆ ଆନ୍ଦୋଳନକୁ ଜୟମଙ୍ଗଳ ବେଶ୍ ଗୁରୁତ୍ୱ ଦେଇଥିଲେ। ସେ ବିଶ୍ୱାସ କରୁଥିଲେ କଂଗ୍ରେସର ନୀତି ଭାଷାସୂତ୍ରରେ ପ୍ରଦେଶ ଗଠନ। ସେହି ସୂତ୍ରରେ ଉତ୍କଳ ପ୍ରଦେଶ ୧୯୨୬ ପର୍ଯ୍ୟନ୍ତ ଗଠିତ ହୋଇ ନଥିବାର ସେ ସ୍ପଷ୍ଟ ମତ ପ୍ରକାଶ କରିଥିଲେ। ଏହି ଦୁଃଖ ଓଡ଼ିଶାର ଲୋକମାନେ ଯେ ପରିମାଣରେ ଅନୁଭବ କରିଥିଲେ, ନିଖିଳ ଭାରତର ଅନୁଭୂତିରେ ତାହା ସେ ପରିମାଣରେ ଆସି ନଥିଲା - ଏପରି ମନ୍ତବ୍ୟ ମଧ ସେ ଦେଇଥିଲେ। ୧୯୨୬ରେ ଉତ୍କଳ ସମ୍ମିଳନୀର କାର୍ଯ୍ୟକ୍ରମକୁ ଜଟିଳ ଦୃଷ୍ଟିରେ ରଖି ସେ ଏହାର ପ୍ରସାରଣ ପାଇଁ ବେଶ୍ ଗୁରୁତ୍ୱ ଦେଇଥିଲେ। ଆନ୍ଧ୍ର ସମ୍ମିଳନୀର ଆନ୍ଦୋଳନ

ସେତେବେଳେ ବେଶ୍ ଅଗ୍ରଗତି କରିଥିଲା ବେଳେ ଉତ୍କଳ ସମ୍ମିଳନୀର ଅଗ୍ରଗତିରେ ଅନେକ ବାଧା ପରିଲକ୍ଷିତ ହୋଇଥିଲା। ଏ ସଂପର୍କରେ ୧୯୨୬ ମସିହା ଡିସେମ୍ବର ୨୬ରେ ଆଶା ସମ୍ବାଦପତ୍ରରେ ସେ ଏକ ସୁଚିନ୍ତିତ ମନ୍ତବ୍ୟ ଦେଇ ଲେଖିଥିଲେ - ଉତ୍କଳ ସମ୍ମିଳନୀରେ ସ୍ୱରାଜ୍ୟ ଉଦ୍ଦେଶ୍ୟ ଯୋଗ କରିବା ଫଳରେ ଉତ୍କଳର ଏକ ମାତ୍ର ପୁରାତନ ଜାତୀୟ ଅନୁଷ୍ଠାନ ଭାଙ୍ଗି ଯାଇଅଛି। ଯେଉଁ କଂଗ୍ରେସ ମେମ୍ବରମାନେ ଏହା କଲେ ସେମାନେ ଯେ ବହୁ ଦିନର ଉତ୍କଳ ସମ୍ମିଳନୀକୁ କଂଗ୍ରେସର ଅନ୍ତର୍ଭୁକ୍ତ କରି ଯଥାକ୍ରମେ ଚଳାଇ ନେଇ ପାରିଲେ ନାହିଁ। ପରବର୍ତ୍ତୀ ବର୍ଷ ପୁଣି ଏକ ନୂତନ ସମ୍ମିଳନୀ କରାଗଲା। ସେ ଯାହା ହେଉ ଗତ କଥାରେ ଆଉ ଶୋଚନା କରିବାର କିଛି ନାହିଁ। ଭଲ ହେଲା କଂଗ୍ରେସ ସମ୍ବନ୍ଧୀୟ ପ୍ରାଦେଶିକ ସମ୍ମିଳନୀଟିଏ କରାଗଲା, ତାହା ରହିବ। ତାହାର ଉନ୍ନତି କରିବାକୁ ହେବ। ବିବିଧ ଉଦ୍ଦେଶ୍ୟର ସାଧନା ନିମନ୍ତେ ଏପରି ବିବିଧ ସମ୍ମିଳନୀ ହେଉ। କିନ୍ତୁ ଓଡ଼ିଆ ଜାତିର ସବୁ ଶ୍ରେଣୀର ଲୋକେ ମିଶି ଆମ ପୁରାତନ ଉତ୍କଳ ସମ୍ମିଳନୀକୁ ବଞ୍ଚାଇ ରଖିବାକୁ ହେବ। ଓଡ଼ିଆର ଜାତୀୟ ଚେତନା କେଉଁ ଦିନରୁ ଆସିଅଛି ତାହା ଜଣାଇବା ପାଇଁ କେବଳ ଉତ୍କଳ ସମ୍ମିଳନୀ ସକ୍ଷମ। ଓଡ଼ିଆର ଜାତୀୟ ଶକ୍ତି ବିକାଶ କରିବା ଏବଂ ସେହି ଜାତି ପାଇଁ ଏକ ପ୍ରଦେଶ ଏକ ବିଶ୍ୱ ବିଦ୍ୟାଳୟ ସ୍ଥାପନ କରିବା ଉତ୍କଳ ସମ୍ମିଳନୀର କାର୍ଯ୍ୟ। ଏହି ସମ୍ମିଳନୀ ଯେ କେବଳ ପ୍ରାକୃତିକ ଓ ରାଜନୈତିକ ଓଡ଼ିଶା ମଧ୍ୟରେ ହେବ ଏହା ନୁହେଁ ପ୍ରବାସୀ ଓଡ଼ିଆମାନଙ୍କ ମଧ୍ୟରେ ସୁଦ୍ଧା ଏ ସମ୍ମିଳନୀ ବସି ପାରିବ। ଆଜି ବର୍ମା, କଲିକତା ପ୍ରଭୃତି ସ୍ଥାନରେ ଓଡ଼ିଆମାନଙ୍କର ବହୁତ ଅଭାବ ଅସୁବିଧା ରହିଛି। ସେହି ସ୍ଥାନମାନଙ୍କରେ ଓଡ଼ିଆମାନଙ୍କ ତୁଳନାରେ ତେଲୁଗୁ ପ୍ରଭୃତିଙ୍କ ସଂଖ୍ୟା ଖୁବ୍ କମ୍ ହେଲେ ସୁଦ୍ଧା ଏମାନେ ନାନା କ୍ଷେତ୍ରରେ ଯେଉଁସବୁ ସୁବିଧା ସବୁ ପାଉଛନ୍ତି ଓଡ଼ିଆମାନେ ତାହା ପାଇ ପାରନ୍ତି ନାହିଁ। କାରଣ ଓଡ଼ିଆମାନଙ୍କର କୌଣସି କ୍ଷେତ୍ରରେ ସମୂହ

ଉଦ୍ୟମ ରହୁନାହିଁ ଏବଂ ସେମାନେ ଜାତୀୟ ଗୌରବ ଉପଲବ୍ଧି କରିପାରୁ ନାହାନ୍ତି। ରେଙ୍ଗୁନଠାରେ ଉତ୍କଳ ସମ୍ମିଳନୀ ହେଲେ ବହୁତ ଉପକାର ହେବ। "ଗଡ଼ଜାତ ବାସିନୀ" ବହୁବାର ଲେଖିଲେଣି ଯେ ଗଡ଼ଜାତ ପାଇଁ ଗୋଟିଏ ସମ୍ମିଳନୀ ଲୋଡ଼ା। ସେଠାରେ ଆଲୋକ ବିକିରଣ କରିବା ପାଇଁ ଉତ୍କଳ ସମ୍ମିଳନୀ ବିନା ଆଉ କିଏ ସମର୍ଥ ହୋଇପାରେ ? ଉତ୍କଳ ସମ୍ମିଳନୀ ହିଁ ଓଡ଼ିଆ ଜାତିର ମେରୁଦଣ୍ଡ। ତାକୁ ଜୀବିତ ନ ରହିଲେ ଓଡ଼ିଆ ଜାତି ବଞ୍ଚି ରହିବ ନାହିଁ। ଆଗାମୀ ଇଷ୍ଟର ଛୁଟିରେ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ କରିବା ପାଇଁ କେହି କେହି ଚେଷ୍ଟା କରୁଥିବାର ଜଣା ଯାଇନାହିଁ। ସମସ୍ତେ ଏକ ମନ ଏକ ପ୍ରାଣ ହୋଇ କାର୍ଯ୍ୟ କଲେ ଏହା ଅସମ୍ଭବ ହେବ ନାହିଁ। ଏହି ବିଶେଷ ଅଧିବେଶନରେ ସମସ୍ତ ଓଡ଼ିଆ ସମ୍ମିଳିତ ହୋଇ ଉତ୍କଳ ସମ୍ମିଳନୀର ନିୟମାବଳୀ ଆଜି ଏପରି ଭାବେ ପ୍ରସ୍ତୁତ କରନ୍ତୁ ଯଦ୍ୱାରା ଉତ୍କଳ ସମ୍ମିଳନୀ ଚିରଦିନ ଓଡ଼ିଆ ଜାତିର ସବୁ ଦଳର ସାଧାରଣ ଅନୁଷ୍ଠାନ ହୋଇ ରହିବ ଏବଂ କେବଳ ରାଜନୈତିକ ଓ ପ୍ରାକୃତିକ ଓଡ଼ିଶା ମଧ୍ୟରେ ତାହାର ଅଧିବେଶନମାନ ନ ହୋଇ ଓଡ଼ିଶାର ବିଭିନ୍ନ ପ୍ରବାସରେ ଏବଂ ଓଡ଼ିଶାର ଗଡ଼ଜାତ ମଧ୍ୟରେ ସୁଦ୍ଧା ଉତ୍କଳ ସମ୍ମିଳନୀ ବସି ରହିବ।

ଜୟମଙ୍ଗଳ ବ୍ରାହ୍ମସମାଜର ଜଣେ ପ୍ରଶଂସକ ଥିଲେ। ତେଣୁ ୧୯୨୬ ସେପ୍ଟେମ୍ବର ୧୧ରୁ ୧୪ ମଧ୍ୟରେ ବୋଇରାଣୀ ପ୍ରାର୍ଥନା ସମାଜର ପ୍ରଥମ ବାର୍ଷିକ ଉତ୍ସବରେ ସେ ବ୍ରାହ୍ମ ଧର୍ମର ମହତ୍ତ୍ୱ ସଂପର୍କରେ ଆଲୋଚନା କରି ଏହାକୁ ନବଯୁଗର ବାର୍ତ୍ତାବହ ରୂପେ ଗ୍ରହଣ କରିଥିଲେ। (ଆଶା, ସେପ୍ଟେମ୍ବର ୨୦, ୧୯୨୬) ସେ କହିଥିଲେ - ବ୍ରାହ୍ମଧର୍ମର ସାଧନା ଭାରତ ପକ୍ଷେ ବୈଦେଶିକ ନୁହେଁ। ଭାରତର ପ୍ରାଚୀନ ଋଷିଗଣ ଯେଉଁ ବ୍ରହ୍ମଜ୍ଞାନ, ବ୍ରହ୍ମଧ୍ୟାନ, ବ୍ରହ୍ମାନନ୍ଦ ରସପାନରେ ନିମଜ୍ଜିତ ଥିଲେ, ଏ

ନବଯୁଗର ବ୍ରାହ୍ମ ସମାଜ ପୁଣି ତାହା ଦେଖାଇ ଦେଇଅଛି । ମାନବ ଜାତିର ଭ୍ରାତୃତ୍ୱ ଏବଂ ସକଳ ଧର୍ମର ମହାସମନ୍ୱୟ ଭାରତର ଋଷି ଦିବ୍ୟ ଦୃଷ୍ଟିରେ ଦେଖିଥିଲେ । କିନ୍ତୁ ସେତେବେଳେ ଭାରତରେ ଏତେ ଧର୍ମ ଓ ଏତେ ଜାତି ନଥିବାରୁ ସେଥିପାଇଁ ସାଧନା ସେମାନଙ୍କ ପକ୍ଷେ ଦରକାର ହୋଇ ନଥିଲା । ଆଜି ହିନ୍ଦୁ ମୁସଲମାନ ଖ୍ରୀଷ୍ଟାନ୍ ଏ ତିନୋଟି ଧର୍ମର ପ୍ରବାହ ତ୍ରିବେଣୀ ଧାରା ରୂପେ ଏ ଭାରତରେ ସମାଗତ । ସେଥିପାଇଁ ବ୍ରାହ୍ମସମାଜ ପକ୍ଷେ ଗୁରୁତ୍ୱର ସାଧନା ଆବଶ୍ୟକ ହୋଇଅଛି । ଏହି ସାଧନାରେ ଭାରତ ତଥା ଜଗତର ସକଳ ପ୍ରକାରର ସମସ୍ୟାର ସମାଧାନ ହେବ । ରଥଙ୍କ ସହିତ ଏହି ଆଲୋଚନାରେ ବାଗ୍ମୀ ବିଶ୍ୱନାଥ କର ଯୋଗ ଦେଇ ତାଙ୍କ ମତକୁ ଦୃଢ଼ ସମର୍ଥନ ଜଣାଇଥିଲେ ।

୧୯୨୬ରେ ସଂସ୍କାର ପତ୍ରିକା ତାଙ୍କ ସଂପାଦନାରେ ବେଶ୍ ସମାଜ ସଂସ୍କାର କର୍ମରେ ଅଗ୍ରସର ହୋଇଥିଲା । ବିଧବା ବିବାହ ଓ ଅସ୍ପୃଶ୍ୟତା ନିବାରଣ ଏହି ଉଭୟ ବିଷୟରେ ସପକ୍ଷ ଓ ବିପକ୍ଷ ମତ ସଂଗ୍ରହ କରି ସେ ଏହି ପତ୍ରିକାରେ ପ୍ରକାଶ କରିବାକୁ ଇଚ୍ଛା କରିଥିଲେ । ସେଥିପାଇଁ କେତେକ ପ୍ରତିନିଧିଙ୍କୁ ବିଭିନ୍ନ ଭଦ୍ରବ୍ୟକ୍ତିଙ୍କ ନିକଟରେ ଉପସ୍ଥିତ କରାଇ ସେମାନଙ୍କଠାରୁ ମତ ସଂଗ୍ରହ କରାଇବାର ବ୍ୟବସ୍ଥା କରିଥିଲେ । ରଥ ସେତେବେଳେ ବ୍ରହ୍ମପୁର ସଂସ୍କାର ଓ ସେବାସଂଘର ସଂପାଦକ ହିସାବରେ କାର୍ଯ୍ୟ କରିଥିଲେ । (ଆଶା, ସେପ୍ଟେମ୍ବର ୬, ୧୯୨୬) ଅନ୍ଧବିଶ୍ୱାସ ଓ କୁସଂସ୍କାର ବିରୁଦ୍ଧରେ ଜୟମଙ୍ଗଳଙ୍କର ଅଭିଯାନ ୧୯୨୫-୨୬ରେ ତୀବ୍ର ହୋଇଥିଲା । ଗଂଜାମ ଘୁମୁସର ତାଲୁକ ଅନ୍ତର୍ଗତ କବିରାଜପୁର ନିକଟରେ ବୁଢ଼ାକେନ୍ଦୁ ଖୁଣ୍ଟ ମୂଳେ ପ୍ରତିଷ୍ଠିତ ଦେବତା ସ୍ଥାନ କିପରି କୁସଂସ୍କାରର ପୀଠ ତାହାର ବର୍ଣ୍ଣନା କରି ସେ ଆଶା ସମ୍ବାଦପତ୍ରରେ ମେ ୩, ୧୯୨୬ ସଂଖ୍ୟାରେ ଦୀର୍ଘ ପ୍ରତିବାଦମୂଳକ ଆଲୋଚନା ପ୍ରକାଶ କରିଥିଲେ ।

ସେଥିରେ ସେ ପ୍ରକାଶ କରିଥିଲେ - ଗଂଜାମ ଘୁମୁସର ତାଲୁକା ଅନ୍ତର୍ଗତ କବିରାଜପୁର ସମୀପରେ ବୁଢ଼ାକେନ୍ଦୁ ଖୁଣ୍ଟ ମୂଳେ ଯେଉଁ ଦେବତାର ପ୍ରତିଷ୍ଠା ହେଉଅଛି ସେ ପୁଣି କୌଣସି ଦୁର୍ଗାଦେବୀ, ଶିବ ବା ବିଷ୍ଣୁରୂପୀ ଦେବତା ନୁହଁନ୍ତି। ଶିବ ବା ବିଷ୍ଣୁଅଂଶର ଦେବତା ହୋଇଥିଲେ ସେତେ ବିଶେଷ ଚିନ୍ତାର ବିଷୟ ହୋଇ ନଥାନ୍ତା। ଯେହେତୁ ଏହି ଦେବତାମାନେ ନଡ଼ିଆ କଦଳି ଆଦି ଫଳ ବା ଧାନ୍ୟାଦି ଶସ୍ୟର ଅନ୍ନରେ ପରିତୃପ୍ତ ହୁଅନ୍ତି। କିନ୍ତୁ ଦୁର୍ଗାଦେବୀ ଖାଲି ଫଳ ମୂଳରେ ସନ୍ତୁଷ୍ଟ ନୁହଁନ୍ତି। ସେ ଖାନ୍ତି ରକ୍ତମାଂସ। ତାଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଲୋକେ ଜୀବହତ୍ୟା କରନ୍ତି। କୁକୁଡ଼ା, ଘୁସୁରି, ଛେଳି ମେଣ୍ଢା ପୋଢ଼ ମଇଁଶି ଇତ୍ୟାଦି ଜୀବଙ୍କୁ ମାରି ଦେବୀ ପୂଜା କରନ୍ତି। ଦେବୀ ପୂଜା ବା ଠାକୁରାଣୀ ପୂଜା ନାମରେ ଅଜ୍ଞ ଲୋକସାଧାରଣ ଘୋର ପାପକର୍ମ କରନ୍ତି। ଏମନ୍ତ କି ଧର୍ମକର୍ମ, ପୁରୁଷାର୍ଥ ଓ ମନୁଷ୍ୟତା ପର୍ଯ୍ୟନ୍ତ ହରାଇ ଆପଣାର ଆତ୍ମାକୁ ଭ୍ରଷ୍ଟ କରନ୍ତି। ହିନ୍ଦୁଜଗତରେ ଯେତେ ଦେବୀପୀଠର ପ୍ରତିଷ୍ଠା ହେଲା, କ୍ରୂରତା, ପାଷଣ୍ଡତା ଏବଂ ପ୍ରାଣୀହିଂସା ସେତେ ବଢ଼ିଲା।

ଆମ ଦେଶର ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀମାନେ ଅଛନ୍ତି। ସେମାନେ କେବଳ ଆମ୍ଭମାନଙ୍କର ବସନ୍ତ, ବିସୂଚିକା, ଫାଟୁଆ ଇତ୍ୟାଦି ଉପଦ୍ରବର ଅଧିଷ୍ଠାତ୍ରୀ। ଏହିସବୁ ଉପଦ୍ରବରୁ ଉଦ୍ଧାର ପାଇବା ଆଶାରେ ସେହି ଗ୍ରାମଦେବୀ ପାଖରେ କୁକୁଡ଼ା ଛେଳି ଆଦି କେତେ ପକ୍ଷୀପଶୁ ବଧ କରାଯାଏ। ପୁଣି କେତେ ପଣାପାଣି ଦିଆଯାଏ। ଏହିସବୁ ଗ୍ରାମଦେବୀ ବାହାରେ ଅନେକ ସ୍ଥାନରେ ଅନେକ ପ୍ରସିଦ୍ଧ ଦେବୀପୀଠ ଅଛି। ଗଂଜାମରେ ତାରିଣୀ ନାମରେ ଏକ ଦେବୀପୀଠ ଅଛି। ସେଠାରେ ତାରିଣୀ ଠାକୁରାଣୀ ନାମରେ ପ୍ରତିବର୍ଷ ଲକ୍ଷ ଲକ୍ଷ ନିରୀହ ପଶୁପକ୍ଷୀ ବଧ କରାଯାଉଅଛି। କେହି ଲୋକ ଆପଣାର ଶିଶୁ ସନ୍ତାନର ବାଳ କଢ଼ାଇବା ପାଇଁ ତାରିଣୀ

ପାହାଡ଼ ଉପରେ ଗୋଟିଏ ଛେଳିଛୁଆ ବଧ କରେ। କେହି ସନ୍ତାନ କାମନାରେ କେହି ବ୍ୟାଧି ନିବାରଣ ଆଶାରେ କେହି ବା ମାମଲା ମକଦ୍ଦମାରେ ଜିଣିବା ପାଇଁ ଛେଳି ମେଣ୍ଢା କୁକୁଡ଼ା ଇତ୍ୟାଦି ପଶୁବଧ କରନ୍ତି। ମା ଯଦି ଡାହାଣୀ ହୁଏ ପିଲାକୁ ଲୁଚାଇବ କେଉଁଠି ? ଗୋଟାଏ ତାରିଣୀ ମା ଡାହାଣୀକୁ ସମ୍ଭାଳି ହେଉନାହିଁ। ଯଦି ବୁଢ଼ାକେନ୍ଦୁ ନାମରେ ଆଉ ଗୋଟିଏ ଡାକିନୀର ଡାକ ପଡ଼ିବ ତେବେ ହିନ୍ଦୁଜାତି କି ହତଭାଗ୍ୟ ବୋଲା ନ ଯିବ ? ମଙ୍ଗଳବାରମାନଙ୍କରେ ବିଶେଷରେ ଚୈତ୍ରମାସ ମଙ୍ଗଳବାରରେ ଏହି ମାଆ ଠାକୁରାଣୀମାନଙ୍କର ମଦମାଂସ ଖିଆ ପାଳି ପଡ଼େ। ମାଆର ଏକ ମଙ୍ଗଳବାରରେ ସହସ୍ରସଂଖ୍ୟକ ପ୍ରାଣୀର ଅମଙ୍ଗଳ ହୁଏ। ଆଜି ଚୈତ୍ର ମଙ୍ଗଳବାର। ବୁଢ଼ାକେନ୍ଦୁ ଠାକୁରାଣୀଠାକୁ ଲୋକେ ଯିବା ଆରମ୍ଭ କଲେଣି। ଏହି ବୁଢ଼ାକେନ୍ଦୁ ଅମଳରେ ହିନ୍ଦୁର ଯେ ଅମଙ୍ଗଳ ହେବ ତାହା ଆଜିଠୁଁ ଜଣାଗଲାଣି। ଦେବୀ ପୀଠସ୍ଥାପନ କରି ତହିଁରେ ପ୍ରାଣୀ ହିଂସା ଓ ମଦ୍ୟ ମାଂସ ନିଷେଧ କରିବା ଅସାଧ। ଠାକୁରାଣୀ ବା ଦେବୀନାମ ସହିତ ରକ୍ତମାଂସ ବା ମଦ୍ୟର ଏପରି ସଂପର୍କ ଅଛି ଯେ ଠାକୁରାଣୀ ନାମ ଶୁଣିବା ମାତ୍ରେ ସ୍ୱର୍ବସାଧାରଣ ଲୋକଙ୍କ ମନରେ ହିଂସାଭାବ ସ୍ୱତଃ ଉଦିତ ହୁଏ। ଆମିଷାହାର ହିଁ ଦେବୀ ଠାକୁରାଣୀଙ୍କର ପ୍ରଧାନ ଲକ୍ଷଣ। ଯେପରି ଉତ୍କଳ ଜାତିରେ ଆମିଷ ହୁଏ ସଧବାର ଚିହ୍ନ।

କେହି ସ୍ୱଳ୍ପଜ୍ଞ ଅପରିଣାମଦର୍ଶୀ ନତୁବା ଶଠ ପାଷଣ୍ଡ ତାରାତାରିଣୀ ପୀଠ ସ୍ଥାପନ କରି ଅସଂଖ୍ୟ ଲୋକଙ୍କୁ ସଧର୍ମ ମାର୍ଗରୁ ବିଚ୍ୟୁତ କରି ଦୁର୍ଲଭ ମାନବାତ୍ମାକୁ ପୈଶାଚିକ କର୍ମରେ ପ୍ରବୃତ୍ତ କରିଅଛି। ଏହି ମହାପାପ ପ୍ରବର୍ତ୍ତକ ସେହି ମୂଳପୁରୁଷ ଯେ ଈଶ୍ୱରାର୍ଶୀବାଦରୁ ବଞ୍ଚିତ ହୋଇ ଚିରକାଳ ନରକ ଯନ୍ତ୍ରଣା ଭୋଗ କରୁଥିବ ଏଥିରେ କି କି ସନ୍ଦେହ ଥାଇପାରେ ? ସେହି ଦେବୀପୀଠମାନଙ୍କରେ ପୈଶାଚିକ ନୃଶଂସ ହିଂସା କର୍ମକାଣ୍ଡ ଦେଖି ଶୁଣି

ସୁଦ୍ଧା ଆଜି କେହି କେହି ସଭ୍ୟ ଶିକ୍ଷିତ ବ୍ୟକ୍ତିମାନେ ମଧ ବୁଢ଼ାକେନ୍ଦୁ ନାମରେ ଏକ ଦେବୀପୀଠରେ ପ୍ରତିଷ୍ଠା ବଢ଼ାଇବାକୁ ବସିଛନ୍ତି ଏହା ବଡ଼ ଆଶ୍ଚର୍ଯ୍ୟ ଏବଂ ଅନୁତାପର ବିଷୟ। ପଶୁବଳୀ ବା ପଶୁପ୍ରୋକ୍ଷଣର ଭାବାର୍ଥ ଯାହା ହେଉ, ତତ୍ତ୍ୱଦର୍ଶୀ ପଣ୍ଡିତମାନେ ଯାହା କହନ୍ତି ଅର୍ଥାତ୍ ମନୁଷ୍ୟର ଯେ ପଶୁତ୍ୱ ବା ପଶୁଭାବ ଥାଏ ତାହାକୁ ଧ୍ୱଂସ କରିବା ହିଁ ପଶୁବଳୀ ବା ପଶୁପ୍ରୋକ୍ଷଣ। କିନ୍ତୁ ଲୋକସାଧାରଣ ଏହି ଭାବାର୍ଥ ବୁଝନ୍ତି ନାହିଁ। ବୁଝିଲେ ବା ଗ୍ରହଣ କରନ୍ତି ନାହିଁ। ସର୍ବସାଧାରଣ ବୁଝନ୍ତି ଯେ ଠାକୁରାଣୀ ମା ଗୋଟାଏ ଜୀବକୁ ଖାଇଲେ ଅର୍ଥାତ୍ ତାକୁ ମାରି ତାର ରକ୍ତମାଂସ ଖାଇଲେ ବା ଆଘ୍ରାଣ କଲେ ଅନ୍ୟ ଜୀବନର ଉପକାର କରନ୍ତି। ପୁଣି ଅନେକ ଲୋକ ମଧ ଆଜି ମାଂସାହାର ଉଦ୍ଦେଶ୍ୟରେ ଠାକୁରାଣୀ ନାମରେ ପଶୁ ପ୍ରୋକ୍ଷଣ କରନ୍ତି। ଏପରି ଯେ କୌଣସି ଅର୍ଥ ହେଉ କେହି ହେଲେ ଜୀବହତ୍ୟା ବା ପଶୁପ୍ରୋକ୍ଷଣ ପଦର ଅର୍ଥ ପଶୁତ୍ୱକୁ ନଷ୍ଟ କରିବା ବୋଲି ଗ୍ରହଣ କରନ୍ତି ନାହିଁ ଏବଂ କାର୍ଯ୍ୟତଃ ପଶୁତ୍ୱ ବଦଳରେ ଆପଣାର ମନୁଷ୍ୟତ୍ୱକୁ ଭ୍ରଷ୍ଟ ନଷ୍ଟ କରି ପକାଉଛନ୍ତି। ଦେବଦେବୀ ପୀଠ ବା ପ୍ରତିମାସ୍ଥାପନର ଏହାହିଁ ଭୟଙ୍କର ପାପ ପରିଣାମ।" ଏହି ଦୀର୍ଘ ବିବରଣୀରେ ଜୟମଙ୍ଗଳ କୁସଂସ୍କାରଗ୍ରସ୍ତ ତତ୍କାଳୀନ ଗଂଜାମ ସମାଜରୁ ପଶୁବଳୀ ପ୍ରଥା ଉଠାଇ ଦେବା ପାଇଁ ନିବେଦନ କରିଥିଲେ।

୧୯୨୬ରେ ବ୍ୟବସ୍ଥାପକ ସଭାକୁ ପ୍ରତିନିଧି ନିର୍ବାଚନ କରି ପଠାଇବା ପଛରେ ଜାତିଆଣ ଭାବ କିପରି ନିହିତ ଥିଲା ତାହା ସଂପର୍କରେ ଜୟମଙ୍ଗଳ ଏକ ଚମତ୍କାର ମତ ଆଶା ସମ୍ବାଦପତ୍ରରେ ମେ ୩, ୧୯୨୨ ସଂଖ୍ୟାରେ ଉପସ୍ଥାପିତ କରିଥିଲେ। ସେ କହିଥିଲେ ଯେ ଘୁମୁସର ବଡ କୋଦଣ୍ଡାଠାରେ କଳିଙ୍ଗ ବୈଶ୍ୟମାନଙ୍କର ମହାସଭା ପକ୍ଷରୁ ଜଣେ କୁମୁଟି ବ୍ୟବସ୍ଥାପକ ସଭାକୁ ଯିବାପାଇଁ ସ୍ଥିର ହୋଇଥିଲା ୧୯୨୬ରେ। ସେହିପରି

ରେବତୀ ମହାଜନ ସଭା, ଆଳିଆ ଜାତିର ସଭା ଜଣେ ଜଣେ ପ୍ରତିନିଧି ବ୍ୟବସ୍ଥାପକ ସଭାକୁ ପଠାଇବା ପାଇଁ ସ୍ଥିର ହୋଇଥିଲା। ହିନ୍ଦୁର ଅସଂଖ୍ୟ ଜାତିଆଣ ସଭା ନିର୍ବାଚନ ସମୟରେ ପ୍ରତିନିଧି ପଠାଇବା ସ୍ଥିର କରିବାରୁ ତୁମୂଳ ଜାତିଭେଦ ସଂଗ୍ରାମ ଚାଲିବ ବୋଲି ସେ ୧୯୨୬ରେ କହିଥିଲେ। ତାଙ୍କ ଦୃଷ୍ଟିରେ ବ୍ରିଟିଶ ସରକାର ଆଗରେ ଭାରତର ଦାସତ୍ୱ ବନ୍ଧନ ଦୃଢ଼କୁ ଦୃଢ଼ତର କରିନେବ। ଭାରତରେ ଜାତିଭେଦ ଥିବା ଯାଏ ବ୍ରିଟିଶ ଶାସନ ସୁଦୃଢ଼ ରହିବ। ସେ ପୁଣି ମତ ଦେଇଥିଲେ - ଯେ ପର୍ଯ୍ୟନ୍ତ ଏକ ମହାଭାରତୀୟ ନୀତି ଗଠିତ ହୋଇନାହିଁ ସେ ଦିନଯାଏ ଭାରତୀୟ ସ୍ୱରାଜ୍ୟ କେବଳ ଆକାଶ କୁସୁମ ମାତ୍ର। କ୍ଷୁଦ୍ରଜାତି ଧର୍ମମତ ଭୁଲି ଏକ ମହାଭାରତୀୟ ଭାବନାରେ ତନ୍ମୟ ହେବା ଆବଶ୍ୟକ ଏହା ଥିଲା ତାଙ୍କର ସିଦ୍ଧାନ୍ତ।

ବୈଶ୍ୟବାଣୀ (କଳିଙ୍ଗ କୁମୁଟିମାନଙ୍କର ଏକ ପତ୍ରିକା) ୧୯୨୬ରେ ଓଡ଼ିଆ ଦେଶ ମିଶ୍ରଣ ବିରୁଦ୍ଧରେ ଲେଖୁଥିଲା। ଏହି ପତ୍ରିକା କୁମୁଟିକୁ କୁମୁଟି କରି ରଖିବା ଶିକ୍ଷା ଦେବା ନିମନ୍ତେ ଉଦ୍ଦିଷ୍ଟ ଥିଲା। ସେଥିପାଇଁ ପୁରୀବାସୀ ସମ୍ବାଦପତ୍ର ଏହାକୁ କୁମୁଟି କାହାଣୀ ବୋଲି କହିଥିଲେ। ଜୟମଙ୍ଗଳ ରଥ ଏହି ବୈଶ୍ୟବାଣୀକୁ ପ୍ରବଳ ସମାଲୋଚନା କରିଥିଲେ। ସେ କହିଥିଲେ - ବାଣିଜ୍ୟର ପ୍ରାଚୀନ ଇତିହାସ, ନାନା ଦେଶରେ ପ୍ରଚଳିତ ବାଣିଜ୍ୟ ଆଲୋଚନା, ଭାରତର କେଉଁ ସ୍ଥାନରେ କିପରି ବାଣିଜ୍ୟ କରାଯାଇପାରେ ତାହାର ବିଚାର, ଭାରତର ବିଭିନ୍ନ ସ୍ଥାନରେ ଏବଂ ଜଗତର ସର୍ବତ୍ର କେଉଁ ଜାତିମାନଙ୍କର କିପରି ବାଣିଜ୍ୟ ପ୍ରଣାଳୀ ବିଦ୍ୟମାନ ତାହାର ଉଲ୍ଲେଖ ନ କରି ବୈଶ୍ୟବାଣୀ କୁମୁଟି କୁଳସଭାର ବିବରଣୀ କଦାକାର ଓଡ଼ିଆ ଭାଷାରେ ପ୍ରକାଶ କରିଛନ୍ତି। ଏହାକୁ ପଢ଼ିଲେ ଓଡ଼ିଆ ଭାଷା ବିଲୋପ ହେବ ବୋଲି ସେ ଆଶାରେ ଜୁଲାଇ ୫, ୧୯୨୬ରେ ପ୍ରକାଶ କରିଥିଲେ। ଇପାରୀ ରଘୁନାଥ ପାତ୍ର



୧୯୨୬ ସେପ୍ଟେମ୍ବର ୨୦ ତାରିଖ ଆଶାରେ ଏହି ସମାଲୋଚନାର ପ୍ରତିବାଦ କରିଥିଲେ। କିନ୍ତୁ ରଥଙ୍କ ମତ ଏ ସଂପର୍କରେ ସହଜରେ ଉଡାଇ ଦିଆଯାଇ ନଥିଲା।

୧୯୨୫ରୁ ୧୯୨୬ ମଧ୍ୟରେ ହିନ୍ଦୁ ମହାସଭା ସଂପର୍କରେ ଜୟମଙ୍ଗଳ ନାନା ପ୍ରକାର ମତ ଓ ମନ୍ତବ୍ୟ ଦେଇଥିଲେ। ୧୯୨୫ ଏପ୍ରିଲ ୧୧ ଓ ୧୨ରେ ଲାଜପତ ରାୟଙ୍କ ସଭାପତିତ୍ୱରେ ହିନ୍ଦୁ ମହାସଭାର ଅଧିବେଶନ କଲିକତାରେ ହୋଇଥିଲା ଏବଂ ଏହା ପୂର୍ବରୁ ଜୟମଙ୍ଗଳ ଓଡ଼ିଶାରୁ ବହୁ ସଂଖ୍ୟାରେ ପ୍ରତିନିଧି ଏହି ମହାସଭାରେ ଯୋଗ ଦେବାକୁ ଅନୁରୋଧ କରିଥିଲେ। (ଉତ୍କଳ ଦୀପିକା, ମାର୍ଚ୍ଚ ୧୪, ୧୯୨୫) ଓଡ଼ିଆମାନେ କାହିଁକି ଏହି ମହାସଭାରେ ଯୋଗଦେବା ଉଚିତ ସେ ସଂପର୍କରେ ସେ ଏକ ସ୍ପଷ୍ଟୀକରଣ ଲେଖି ଜଣାଇଥିଲେ କଲିକତା କର୍ଣ୍ଣୱାଲିସ୍ ଷ୍ଟ୍ରିଟ୍‌ରୁ ମାର୍ଚ୍ଚ ୬, ୧୯୨୫ରେ ଏବଂ ଏହା ଉତ୍କଳ ଦୀପିକାରେ ମାର୍ଚ୍ଚ ୧୪, ୧୯୨୫ରେ ପ୍ରକାଶ ପାଇଥିଲା। ସେ କହିଥିଲେ – ଉତ୍କଳ ହିନ୍ଦୁବହୁଳ ପ୍ରଦେଶ। ଏଠାରେ ହିନ୍ଦୁ ମୁସଲମାନ ସଂଘର୍ଷଣ ନାହିଁ। ସଂଘର୍ଷଣ ଅଛି କେବଳ ହିନ୍ଦୁର ବିଭିନ୍ନ ଜାତି ଓ ସଂପ୍ରଦାୟ ମଧ୍ୟରେ। ରୀତି ନୀତି, ଆଚାର ବ୍ୟବହାର ଭାଷାଧର୍ମରେ ହିନ୍ଦୁର ଏପରି ଅସାମଞ୍ଜସ୍ୟ ରହିଅଛି ଯେ ଏତଦ୍ୱାରା ମହାଭାରତୀୟ ଜାତି ସଂଗଠନରେ ପଦେପଦେ ବାଧା ଉପସ୍ଥିତ ହୁଏ। ହିନ୍ଦୁର ଆଧାତ୍ମିକ, ନୈତିକ ଓ ଶାରୀରୀକ ବଳ ଲୋପ ପାଇ ଆସୁଅଛି। ତାହାକୁ ରକ୍ଷା କରିବାକୁ ହେବ। ଏଥି ସକାଶେ ହିନ୍ଦୁର ବିଶିଷ୍ଟ ନେତାମାନେ ସମବେତ ହୋଇ ଯେ ଆଲୋଚନା କରିବେ ସେଥିରେ ଓଡ଼ିଆଙ୍କ ଯୋଗଦାନ ଯେ କିପରି ପ୍ରୟୋଜନ ତାହା ସମସ୍ତେ ବୁଝୁଥିବେ।" ସେ ଉତ୍କଳ ପ୍ରାଦେଶିକ ହିନ୍ଦୁ ମହାସଭା ଗଠନ ପାଇଁ ସେଥିରେ ଇଚ୍ଛା ପ୍ରକାଶ କରିଥିଲେ। ଜୟମଙ୍ଗଳ ହିନ୍ଦୁ ମହାସଭାକୁ ମହାଭାରତୀୟ ଭାବନା

ସହିତ ଜଡ଼ିତ କରିଥିଲେ। ଏହାକୁ ସେ ସଂକୀର୍ଣ୍ଣ ଅନୁଷ୍ଠାନ ରୂପେ ଗ୍ରହଣ କରି ନଥିଲେ।

ହିନ୍ଦୁ ମହାସଭାର ଆବଶ୍ୟକତା ଉପରେ ସେ ୧୯୨୫ରେ ଗୁରୁତ୍ୱ ଆରୋପ କରିଥିଲେ। କଲିକତା ହିନ୍ଦୁ ମହାସଭାରେ ଓଡ଼ିଶାର ପୁରୀରୁ କୁଳମଣି ସାମନ୍ତରାୟ ଏବଂ ସମାଜ ପତ୍ରିକାର ପ୍ରତିନିଧି ଛଡ଼ା ଆଉ କେହି ୧୯୨୫ରେ ଯୋଗ ଦେଇ ନଥିଲେ। ସେ ଉତ୍କଳରେ ହିନ୍ଦୁ ମହାସଭାର ଗଠନ ଆଶା ଜୁଲାଇ ୧୯୨୫ ସୁଦ୍ଧା ହୋଇ ନଥିବାର କଥା ସ୍ପଷ୍ଟ ଭାବରେ କହିଥିଲେ। ଓଡ଼ିଶାର ଅବସ୍ଥା ସଂପର୍କରେ କଲିକତାର ହିନ୍ଦୁ ମହାସଭାରେ ଲାଲା ଲାଜପତ୍ ରାୟ କହିଥିଲେ - "Orissa which is predominantly Hindu is almost always in a condition of chronic lethargy". ଏହାକୁ ସମର୍ଥନ କରି ଓଡ଼ିଶାର ନାନାବିଧ ସମସ୍ୟା - ଅସ୍ପୃଶ୍ୟତା ସମସ୍ୟା, ବିଧବା ଅନାଥ ବାଳିକା ସମସ୍ୟାର ସମାଧାନ ପାଇଁ ଓଡ଼ିଶାରେ ହିନ୍ଦୁ ମହାସଭାର ଶାଖା ପ୍ରତିଷ୍ଠାର ଆବଶ୍ୟକତା ସେ ଦର୍ଶାଇଥିଲେ। ଭାରତରେ ହିନ୍ଦୁ ମହାସଭାର ଆବଶ୍ୟକତା ସଂପର୍କରେ ସେ ଉତ୍କଳ ଦୀପିକାରେ ଜୁଲାଇ ୧୮, ୧୯୨୫ରେ ଲେଖିଥିଲେ - ଭାରତରେ ମୁସଲମାନ ପକ୍ଷେ ମୋସ୍‌ଲିମ୍ ଲିଗ୍‌ର ଏ କ୍ଷଣି ଆବଶ୍ୟକତା ନ ହୋଇପାରେ। ଖ୍ରୀଷ୍ଟିଆନ ପକ୍ଷେ ଖ୍ରୀଷ୍ଟୀୟ ସମ୍ମିଳନୀ ନଥିଲେ ମଧ୍ୟ ଚଳିବ। କିନ୍ତୁ ହିନ୍ଦୁର ମହାସଭା ବ୍ୟତୀତ ନିକଟ ଭବିଷ୍ୟତରେ ଅସ୍ତିତ୍ୱ ଅସମ୍ଭବ ହୋଇପଡ଼ିବ। ମୁସଲମାନ ଓ ଖ୍ରୀଷ୍ଟିଆନ୍‌ର ଗୋଟିଏ ଗୋଟିଏ ସଂପ୍ରଦାୟ ଗଠିତ ହୋଇ ସାରିଲାଣି। କିନ୍ତୁ ହିନ୍ଦୁର ସଂପ୍ରଦାୟ ଦିନକୁ ଦିନ ଭାଙ୍ଗି ପଡୁଛି। ମୁସଲମାନର ମସ୍‌ଜିଦ୍ ଓ ଖ୍ରୀଷ୍ଟିଆନ୍‌ର ଗୀର୍ଜା ସେମାନଙ୍କ ଭ୍ରାତୃତ୍ୱ ପାଖରେ ବାନ୍ଧି ହୋଇ ରହିଛି ଏବଂ ସେମାନଙ୍କ ସଂପ୍ରଦାୟକୁ ଭାରତରେ ସୁପ୍ରତିଷ୍ଠିତ କରୁଅଛି। ଭାରତର ବାହାରେ ଜଗତରେ ଅନ୍ୟତ୍ର

ମଧ୍ୟ ସେମାନଙ୍କର ଶକ୍ତି ରହିଅଛି । ଏପରି ଅବସ୍ଥାରେ ସେମାନଙ୍କ ମଧ୍ୟରେ ଯଦି କିଛି ପ୍ରୟୋଜନୀୟତା ଥାଏ, ତା କେବଳ ହିନ୍ଦୁକୁ ନିଜ ସଂପ୍ରଦାୟ ମଧ୍ୟକୁ ନେବା ପାଇଁ କିନ୍ତୁ ହିନ୍ଦୁ ଜାତି ବିଲୁପ୍ତ ହେଲେ ଏକା ଭାରତରେ ନୁହେଁ ସମଗ୍ର ଜାତିରେ ଏକ ମହା ଅଭାବ ରହିଯିବ । ଭାରତରେ ହିନ୍ଦୁର ପତନୋନ୍ମୁଖ ଓ ବିଶୃଙ୍ଖଳ ଜାତିର ସଂଗଠନ ଏବଂ ଭାରତ ବାହାରେ ଏହି ଜାତିର ସଂପ୍ରସାରଣ କାର୍ଯ୍ୟରେ ଏ କ୍ଷଣି ହିନ୍ଦୁକୁ ସମସ୍ତ ଶକ୍ତି ଲଗାଇବାକୁ ହେବ । ସୁତରାଂ କଂଗ୍ରେସ କାର୍ଯ୍ୟ ସଂଗେ ସଂଗେ ତାର ହିନ୍ଦୁ ସଭା କାର୍ଯ୍ୟରେ ବିଶେଷ ମନଯୋଗୀ ହେବା ଆବଶ୍ୟକ । ଆର୍ଥିକ ଉନ୍ନତ ଏବଂ ରାଜନୈତିକ ସ୍ୱାଧୀନତା ପାଇଁ କାମ କରିବା ଛଡ଼ା ହିନ୍ଦୁ ପକ୍ଷେ ଆହୁରି ଗୋଟିଏ ବିଶେଷ କର୍ତ୍ତବ୍ୟ ଅଛି ତା ସମାଜ ସଂସ୍କାର । ତାହା ତ କଂଗ୍ରେସ ପକ୍ଷରୁ ହେବା ଅସମ୍ଭବ । ହିନ୍ଦୁ ପକ୍ଷେ ଅସ୍ପୃଶ୍ୟତା ନିବାରଣ କଂଗ୍ରେସର ଉପଦେଶ ହୋଇପାରେ । କିନ୍ତୁ ଏଥିପାଇଁ ଖ୍ରୀଷ୍ଟିଆନ୍ ମୁସଲମାନ ଆଦି କଣ କରିପାରିବେ ? ଏହା ହିନ୍ଦୁ ମହାସଭାର କାର୍ଯ୍ୟ-ଯେଉଁଠାରେ ହିନ୍ଦୁ ଜାତିର ଯେତିକି ଉନ୍ନତି ସେହିଠାରେ ସେହି କାର୍ଯ୍ୟ ସେତିକି ଅଗ୍ରସର ହେବ । କଲିକତାଠାରେ ହିନ୍ଦୁ ମହାସଭା ସ୍ଥିର କଲେ ଯେ ଆମେ କଥିତ ଅଛୁଆଁ ଜାତିର ଲୋକେ ସାଧାରଣ ଦେବାଳୟ, କୂଅ, ବିଦ୍ୟାଳୟ, ସଭାସମିତି ଆଦିରେ ସମସ୍ତଙ୍କ ସହିତ ସମାନ ଅଧିକାର ଲାଭ କରିବେ; କିନ୍ତୁ ଦେବାଳୟରେ ଅଧିକାର ସେମାନଙ୍କର ନାହିଁ । ବଂଗ ପ୍ରାଦେଶିକ ହିନ୍ଦୁ ମହାସଭାରେ ପୁଣି ସ୍ଥିର ହେଲା ଯେ ବେଦାଧ୍ୟୟନ ଅଧିକାର ସେମାନଙ୍କର ରହିବ । ସେମାନଙ୍କ ସହିତ ଭୋଜନ, ପାନ, ବିବାହାଦିର ସମ୍ବନ୍ଧ ରଖାଯିବ ନାହିଁ ବୋଲି କେତେଠାରେ କୁହାଗଲା । କିନ୍ତୁ କେତେଠାରେ ଅବାଧରେ ତାହା ଚଳିଲା । କାଶୀର କେତେକ ଜଣ ସନାତନ ଧର୍ମୀ ପଣ୍ଡିତ କହିଲେ ଯେ ଏହା ଅନ୍ୟାୟ । କିନ୍ତୁ, ମହାତ୍ମାଗାନ୍ଧୀ ପ୍ରଭୃତି କେତେ ଜଣ ସନାତନ

ଧର୍ମୀ କହିଲେ ଯେ ଭୋଜନ, ପାନ, ବିବାହ ଏସବୁ ଇଚ୍ଛାଧୀନ କଥା। ଏହା ସହିତ ଧର୍ମର କିଛି ସମ୍ବନ୍ଧ ନାହିଁ। ଦେଶାଚାର ଓ କୁଳାଚାରର ବଶବର୍ତ୍ତୀ ହୋଇ କେହି କେହି ବିଧବାର ପୁନର୍ବିବାହ ସମର୍ଥନ କରୁ ନଥିବା ସ୍ଥଳେ ଅନ୍ୟ କେହି କେହି ଧର୍ମନୀତି ଶାସ୍ତ୍ର ଆଦି ଦେଖାଇ ବିଧବା ବିବାହ କରୁଅଛନ୍ତି। ଏ ସବୁ ସଂଗ୍ରାମ ମଧ୍ୟରେ ହିନ୍ଦୁ ଜାତି ଗଠିତ ହୋଇ ଚାଲିବ ଏବଂ ଏସବୁ ସଂଗ୍ରାମର ସ୍ଥାନ କେବଳ ହିନ୍ଦୁ ମହାସଭା। କେତେକ ହିନ୍ଦୁଙ୍କର ଆପତ୍ତି ଥିଲେ ସୁଦ୍ଧା ଅନେକ ହିନ୍ଦୁ ଶାସ୍ତ୍ର ପ୍ରମାଣ ଦେଖାଇ କହନ୍ତି ଯେ କେହି ଇଚ୍ଛା କଲେ ଅନ୍ୟ ଜାତିରୁ ହିନ୍ଦୁ ଜାତିକୁ ଆସିପାରେ। ହିନ୍ଦୁ ମହାସଭାରେ ମଧ୍ୟ ସେଦିନ ଏ କଥା ସ୍ଥିର ହେଲା। ଏକା ଭାରତରେ ନୁହେଁ ଜଗତର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ହିନ୍ଦୁ ଜାତିର ଉନ୍ନତ ଧର୍ମ ସକଳ ପ୍ରଚାର କରି ଅନ୍ୟ ଜାତିରୁ ଲୋକଙ୍କୁ ହିନ୍ଦୁ ଜାତିକୁ ଆଣିବାକୁ ହେବ। ହିନ୍ଦୁର ବ୍ରାହ୍ମ ସମାଜ, ଆର୍ଯ୍ୟ ସମାଜ, ରାମକୃଷ୍ଣ ସଂପ୍ରଦାୟର ଉନ୍ନତି ବୈଷ୍ଣବ ସଂପ୍ରଦାୟ ପ୍ରଭୃତି ଘେନି ଏହାର ଆୟୋଜନ କରିବାକୁ ହେବ। ଏଥିପାଇଁ ହିନ୍ଦୁ ମହାସଭାର ବାହୁଛାୟାରେ ସକଳ ହିନ୍ଦୁ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମ୍ମିଳିତ ହେବାକୁ ହେବ। ପରମ ପିତାଙ୍କ ନିକଟରେ ଋଣ୍ଡ ନ ହେଲେ ଭ୍ରାତୃତ୍ୱ ବନ୍ଧନ ଦୃଢ଼ ହୋଇଉଠେ ନାହିଁ। ଅତଏବ ହିନ୍ଦୁ ମହାସଭା ସ୍ଥିର କଲେ ଯେ ହିନ୍ଦୁ ମାତ୍ରେ ସମସ୍ତେ ପ୍ରତି ଏକାଦଶୀ ଦିନ ପ୍ରତ୍ୟେକ ସ୍ଥାନରେ ସମବେତ ହୋଇ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବେ ଏବଂ ଗୀତାର ଦ୍ୱିତୀୟ ଅଧ୍ୟାୟ ଅଧ୍ୟୟନ କରିବେ। ହିନ୍ଦୁ ଜାତିର ଉନ୍ନତି ଚିନ୍ତା କରିବେ।

ପତିତ (ଦଳିତ) ଜାତିର ଉନ୍ନତି ପାଇଁ ଜୟମଙ୍ଗଳଙ୍କ ସଂସ୍କାରକ ଜୀବନ ଆରମ୍ଭରୁ ସଂକଳ୍ପବଦ୍ଧ ଥିଲା। ୧୯୨୬ରେ ବ୍ୟବସ୍ଥାପକ ସଭାମାନଙ୍କର ନୂତନ ଗଠନ କାର୍ଯ୍ୟ ଚାଲିଥିଲା। ନିର୍ବାଚନ କାର୍ଯ୍ୟ ଶେଷ ହେବା ପରେ ପ୍ରତ୍ୟେକ ବ୍ୟବସ୍ଥାପକ ସଭାକୁ ପତିତ ଜାତି ପକ୍ଷରୁ ଯେଉଁ

ମନୋନୟନ ହେଉଥିଲା ତାହାର ଶକ୍ତ ସମାଲୋଚନା ଜୟମଙ୍ଗଳ କରିଥିଲେ। ତାଙ୍କ ମତରେ - ଯେଉଁମାନେ ପତିତ ଜାତି ତରଫରୁ ମନୋନୀତ ହୋଇଯାନ୍ତି ସେମାନେ ପତିତ ଜାତିର ଲୋକ ବୋଲି କହିବାର କୌଣସି କାରଣ ନାହିଁ। ଅପରିଷ୍କାର ଅପରିଚ୍ଛନ୍ନତାକୁ ଭୟ କରି ଯେଉଁମାନେ ପତିତ ଜାତିର ଲୋକଙ୍କଠାରୁ ଦୂରରେ ରହନ୍ତି ପତିତଜାତି ପକ୍ଷରୁ ସେପରି ଲୋକ ମନୋନୀତ ହୋଇଥାନ୍ତି। ପତିତ ଜାତିର ଆଭ୍ୟନ୍ତରୀଣ ସୁଖ ଦୁଃଖ ଅଭାବ ଅସୁବିଧାର କଥା ଏମାନେ କଣ ଜାଣିବେ ? ସମାଜର ଅସ୍ପୃଶ୍ୟତା ନିବନ୍ଧନ ପ୍ରକାଶ୍ୟ ଭାବେ ସାହାସ ସହକାରେ ଯେଉଁମାନେ ଏଡିପାରି ନାହାଁନ୍ତି, ସେପରି ଲୋକ ମଧ୍ୟ କେତେକ ସ୍ଥାନରେ ମନୋନୀତ ହୋଇଅଛନ୍ତି। (ଉତ୍କଳ ଦୀପିକା, ନଭେମ୍ବର ୧୩, ୧୯୨୬) ପତିତ ଜାତି ଭିତରେ କଟକ ଜିଲାର ରାମଚନ୍ଦ୍ର ଦାସଙ୍କ ପରି ଉତ୍ସାହୀ ଶିକ୍ଷିତ ବ୍ୟକ୍ତିଙ୍କ ସଂଖ୍ୟା ବିରଳ ନୁହେଁ ବୋଲି ସେ ମତ ଦେଇ କହିଥିଲେ - ସେପରି ଉତ୍ସାହୀ ବ୍ୟକ୍ତି ବ୍ୟବସ୍ଥାପକ ସଭାରେ ବସିବା ଉଚିତ।

୧୯୨୬ ଜୁଲାଇ ମାସ ବେଳକୁ ବ୍ରହ୍ମପୁରରେ ପତିତପାବନ ମିଶନ ବା ସଂଘ ସକ୍ରିୟ ହୋଇଥିଲା। ବ୍ରହ୍ମପୁର ଉପାସନା ମନ୍ଦିରଠାରେ ଜୁଲାଇ ୨୫, ୧୯୨୬ରେ ପତିତପାବନ ମିଶନର ଏକ ଅଧିବେଶନ ହୋଇଥିଲା। ଏହି ମିଶନ୍ ଜୟମଙ୍ଗଳଙ୍କ "ସଂସ୍କାର ଓ ସେବାସଂଘ" ର ଅନ୍ତର୍ଭୁକ୍ତ ହୋଇଥିଲା। ସୁରୋଳର ଅନ୍ତର୍ଯ୍ୟାମୀ ବେହେରା ଏହାର ଅନ୍ୟତମ ସଂପାଦକ ଥିଲେ। ବିବିଧ ଉପାୟରେ ଅନୁନ୍ନତ ଏବଂ ପ୍ରପୀଡ଼ିତ ଜାତିମାନଙ୍କ ମଧ୍ୟରେ ଜାଗରଣ ଆଣି ଅସ୍ପୃଶ୍ୟତା ଆଦି ନିବାରଣ କରିବା ଏହି ସଂଘର ଉଦ୍ଦେଶ୍ୟ। ଯେଉଁମାନେ ଏହା ନିଜ ଜୀବନରେ ପାଳନ କରିବେ ସେମାନେ ଏହି ସଂଘର ସଭ୍ୟ ହେବେ। ଅନୁନ୍ନତ ଜାତିମାନଙ୍କ ମଧ୍ୟରେ ସମାଜ ସଂସ୍କାର, ଶିକ୍ଷା ଓ ଚିକିତ୍ସାର ଆୟୋଜନ ପ୍ରଥମେ କରିବା

ପାଇଁ ଏ ପତିତପାବନ ମିଶନ ଦୃଢ଼ ସଂକଳ୍ପ କରିବା ଉଚିତ ବୋଲି ରଥ ୧୯୨୬ରେ ସ୍ପଷ୍ଟ ଭାବରେ ଜଣାଇଥିଲେ। (ଆଶା, ଅଗଷ୍ଟ ୨୩, ୧୯୨୬)

ଅକ୍ଟୋବର ୨୧, ୧୯୨୬ରେ ଗଂଜାମ ସୋନପୁର ସମୁଦ୍ର କୂଳରେ ପତିତପାବନ ସଂଘର ସମ୍ମିଳନୀରେ ଜୟମଙ୍ଗଳ ରଥ ସଭାପତି ହୋଇଥିଲେ। ଇଚ୍ଛାପୁର ଷ୍ଟେସନରୁ ସେ ଯାତ୍ରା କରି ନାଟ ସଂକୀର୍ତ୍ତନାଦି ଉତ୍ସବ ସହ ସୁରୋଳ, କରାପେଣ୍ଠ, କଇଠା, ନୂଆଗାଁ ଓ ସୋନପୁର ଗ୍ରାମମାନଙ୍କ ଭିତର ଦେଇ ସଭା ସ୍ଥାନରେ ପହଞ୍ଚିଥିଲେ। ଏହି ସଭାରେ ତିନି ହଜାର ଲୋକ ଯୋଗ ଦେଇଥିଲେ। ସେଥିରେ ୫୦୦ ଅଛୁବ ଜାତିର ଲୋକ ଏବଂ ସ୍ତ୍ରୀମାନେ ଥିଲେ। ସଭାପତିଙ୍କର ଅଭିଭାଷଣରେ ପତିତ ଜାତିର ଉନ୍ନତି ଏବଂ ଅସ୍ପୃଶ୍ୟତା ନିବାରଣ ମୁଖ୍ୟ ପ୍ରସଙ୍ଗ ଥିଲା। (ଉତ୍କଳ ଦୀପିକା, ନଭେମ୍ବର ୬, ୧୯୨୬) ସମାଜର ବିଭିନ୍ନ କୁସଂସ୍କାର-କୁମାର ପୂର୍ଣ୍ଣିମାରେ ଅସତ୍ ଆମୋଦ, କାର୍ତ୍ତିକ ଅମାବାସ୍ୟା ଦିନ ଦିପାବଳୀ ବାଣରେ ଘର ପୋଡ଼ି ବିରୁଦ୍ଧରେ ତାଙ୍କ ନେତୃତ୍ୱରେ ପତିତପାବନ ମିଶନ୍ ସଂଗ୍ରାମ ଚଳାଇଥିଲା।

ଜୟମଙ୍ଗଳଙ୍କର ସଂସ୍କାରକ ଜୀବନର ଅବିସ୍ମରଣୀୟ ପର୍ଯ୍ୟାୟ ଥିଲା ୧୯୨୭-୨୮। ଏହି ସମୟରେ ତାଙ୍କର ବହୁମୁଖୀ ସମାଜ ସଂସ୍କାର କାର୍ଯ୍ୟକ୍ରମ ପାଇଁ ପତ୍ରପତ୍ରିକାରେ ମତ ଉପସ୍ଥାପନ ସହିତ ବିଭିନ୍ନ ଗଠନାତ୍ମକ ଯୋଜନାରେ ମନନିବେଶ ଥିଲା ମୁଖ୍ୟ ପ୍ରସଙ୍ଗ। ୧୯୨୭ରେ ଗଂଜାମ ଜିଲା କଂଗ୍ରେସ କମିଟିର ସଂପାଦକ ହିସାବରେ ମଧ୍ୟ ଜୟମଙ୍ଗଳ କାର୍ଯ୍ୟ କରୁଥିଲେ। ୧୯୨୭ ମାର୍ଚ୍ଚ ମାସରେ ସେ ମଂଜୁଷା ପରିଦର୍ଶନ କରିଯାଇଥିଲେ। ମଂଜୁଷାରେ ପାଠାଗାର ସମ୍ମୁଖସ୍ଥ ପଡ଼ିଆରେ ତାଙ୍କ ପରିଦର୍ଶନ କାଳରେ ଏକ ସଭା ହୋଇଥିଲା। ପଣ୍ଡିତ ଉଜ୍ଜଳେଶ୍ୱର

ପଟ୍ଟଯୋଷୀ ଏଥିରେ ସଭାପତି ହୋଇଥିଲେ। ସେହି ସଭାରେ ଜୟମଙ୍ଗଳ ହିନ୍ଦୁ ଜାତିର ଶାସ୍ତ୍ରୀୟ ଦୃଷ୍ଟିକୋଣ ଉପରେ ଆଲୋଚନା କରି ହିନ୍ଦୁର ନାନା ଅଭାବ ଉପରେ ଏକ ସୁଚିନ୍ତିତ ମତ ଉପସ୍ଥାପନ କରିଥିଲେ। ଏହା ମାର୍ଚ୍ଚ ୨୬, ୧୯୨୭ରେ ଉତ୍କଳ ଦୀପିକାରେ ପ୍ରକାଶିତ ହୋଇଥିଲା। ସେଥିରେ ସେ କହିଥିଲେ- ହିନ୍ଦୁ ଜାତିର କେତେକ ପଣ୍ଡିତ ଅର୍ଥକୁ ଅନର୍ଥକ ବିଷୟ ଚିନ୍ତା କରି ସେଥିରୁ ମୁକ୍ତ ରହିବାକୁ ଉପଦେଶ ଦିଅନ୍ତି। ଆଜି ଶୁଣାଗଲା ଯେ ଭଗବାନଙ୍କର ଅନ୍ୱେଷଣ ମଧ୍ୟ ଦରକାର ନାହିଁ। ଅର୍ଥର ସାଧନା କରିବାକୁ ହେବ। ହିନ୍ଦୁ ଜାତିର ଶାସ୍ତ୍ର ସକଳ ଉଭୟ ଦିଗରେ ଏପରି ଶେଷସୀମାକୁ ଯାଇ ପହଁଞ୍ଚିଅଛନ୍ତି ଏବଂ ଉଭୟ ଦିଗକୁ ସମନ୍ୱୟ ମଧ୍ୟ କରିଅଛନ୍ତି। ଅତି ସହଜ ଓ ସରଳଭାବେ ଭାଗବତରେ ଜଗନ୍ନାଥ ଦାସ କହିଅଛନ୍ତି, "ଧନ ଅର୍ଜିଲେ ଧର୍ମ କରି, ଧର୍ମେ ପ୍ରାପତ ନରହରୀ"। ଏହି ସମନ୍ୱୟ ପନ୍ଥା ହିଁ ହିନ୍ଦୁ ଜାତିକୁ ଉନ୍ନତ କରିବ। ଅର୍ଥ ପ୍ରତି ବିରକ୍ତ ହେବା ଯେପରି ଅନୁଚିତ ସେଥିରେ ସେପରି ଏକାନ୍ତ ଆସକ୍ତ ହେବା ମଧ୍ୟ ସେପରି କ୍ଷତିକାରକ। ତେବେ ଏ ଆର୍ଥିକ ସମସ୍ୟାର ସମାଧାନ ହେଉଛି କିପରି ? ସ୍ୱରାଜ୍ୟ ହିଁ ଏହାର ପୂର୍ଣ୍ଣ ସମାଧାନ, ଏଥିରେ ସନ୍ଦେହ ନାହିଁ। ଗୋରସ ସୁଲଭ କରିବା ବୋଲ ବା ବ୍ୟବସାୟ ବାଣିଜ୍ୟର ଉନ୍ନତି ବୋଲ ଭାରତ ସ୍ୱାଧୀନ ହେଲେ ହିଁ ସମ୍ଭବ ହେବ। ସେ ପୂର୍ବରୁ ତେବେ ଆମ୍ଭମାନଙ୍କର ଆର୍ଥିକ ଉନ୍ନତିର କିଛି ଉପାୟ ନାହିଁ? ଅଛି ପ୍ରଧାନ ଉପାୟ ଅରଟ। ଘରେ ଘରେ ଅରଟ ଚଳାଇ ସ୍ୱଦେଶୀ ବ୍ୟବହାର କରିବାକୁ ହେବ। ହିନ୍ଦୁର ପୁଣି ଆହୁରି କେତୋଟି ଆର୍ଥିକ ଅବନତିର କାରଣ ରହିଛି ତାହା ଦୂର କରାଯାଇପାରେ। ବାଲ୍ୟବିବାହ ଓ ଅପରିମିତ ବଂଶବୃଦ୍ଧି ଯେପରି ହିନ୍ଦୁଜାତିକୁ ଦିନକୁ ଦିନ କ୍ଷୀଣବଳ କରି ଦେଉଅଛି ସେପରି ବିବାହ ଶ୍ରାଦ୍ଧାଦିରେ ପୌରହିତ୍ୟ ଓ କେତେକ ଅନର୍ଥକ କୌଳିକ ପ୍ରଥା ତାକୁ

ଦରିଦ୍ରତା ଆଡ଼େ ଟାଣି ନେଉଛନ୍ତି। ହିନ୍ଦୁ ଜାତି ସାବଧାନ ହେଲେ ଅତି ଶୀଘ୍ର ତାହାର ଆର୍ଥିକ ଉନ୍ନତି ଆଖିକୁ ଦିଶିଲା ଭଳି ହୋଇ ଉଠିବ, ଏଥିରେ ସନ୍ଦେହ ନାହିଁ। ଏପରି ଭାବରେ ଜାତିକୁ ଶକ୍ତିଶାଳୀ ନ କଲେ ସ୍ୱରାଜ୍ୟ ସଂଗ୍ରାମରେ ଜୟୀ ହେବା କେବଳ ଅସମ୍ଭବ ମାତ୍ର।

ଉତ୍କଳ ସମ୍ମିଳନୀର ଅଧିବେଶନମାନ ଗଡ଼ଜାତରେ ଓ ଓଡ଼ିଆମାନଙ୍କ ପ୍ରବାସ ବର୍ମା ଓ କଲିକତାରେ ହେବା ଆବଶ୍ୟକ ବୋଲି ସେ ୧୯୨୭ରେ ବାରଂବାର ମନ୍ତବ୍ୟ ଦେଇଥିଲେ। ଗଡ଼ଜାତ ତଥା ଓଡ଼ିଆମାନଙ୍କ ପ୍ରବାସରେ ଓଡ଼ିଆର ପ୍ରବଳ ଜାତୀୟଶକ୍ତି ଥିବାର କଥା ସେ ପ୍ରକାଶ କରିଥିଲେ। ଗଡ଼ଜାତ ବିନା ଓଡ଼ିଆ ପ୍ରଦେଶ ଗଠନ ଅସମ୍ଭବ ଏ କଥା ସେ ଦୃଢ଼ ସ୍ୱରରେ ୧୯୨୭ରେ ପ୍ରକାଶ କରିଥିଲେ। (ଉତ୍କଳ ଦୀପିକା, ମେ ୭, ୧୯୨୭) ତାଙ୍କ ମତରେ ଗଡ଼ଜାତର ରାଜାମାନେ ଯେତେ ବିଭବଶାଳୀ ହୋଇ ରହିଥାନ୍ତୁ ପଛକେ, ଓଡ଼ିଶାର ଉନ୍ନତି ନ ହେଲେ ସେମାନଙ୍କର ଅବନତିକୁ ଅନ୍ୟ ଲୋକମାନେ ସ୍ୱୀକାର କରିବେ ବୋଲି ସେ ମନ୍ତବ୍ୟ ଦେଇଥିଲେ। ୧୯୨୭ରେ ଉତ୍କଳ ସମ୍ମିଳନୀର ସଭାପତି ରୂପେ ଗଡ଼ଜାତର କୌଣସି ଜଣେ ରାଜାଙ୍କୁ ଗ୍ରହଣ କରିବା ପାଇଁ ସେ ପ୍ରସ୍ତାବ ଦେଇଥିଲେ।

ନିଖିଳ ଭାରତ ଜାତୀୟ କଂଗ୍ରେସର ଉଦ୍ଦେଶ୍ୟ ଆଣି ବଳପୂର୍ବକ ଉତ୍କଳ ସମ୍ମିଳନୀରେ ଭରତି କରାଗଲେ ମଧ୍ୟ ସମ୍ମିଳନୀର ଉଦ୍ଦେଶ୍ୟ କେବଳ ସମଗ୍ର ଉତ୍କଳଭାଷୀ ପ୍ରଦେଶକୁ ଏକ ଶାସନାଧୀନ କରିବା ଏହିପରି ମନ୍ତବ୍ୟ ଦେଇ ସେ କହିଥିଲେ କୌଣସି ଅନୁଷ୍ଠାନର ମୂଳ ଉଦ୍ଦେଶ୍ୟରେ ପରିବର୍ତ୍ତନ ଆଣିବା ଅନ୍ୟାୟ। (ଉତ୍କଳ ଦୀପିକା, ମେ ୭, ୧୯୨୭) ଯେତେବେଳେ ଉତ୍କଳ ବିଖଣ୍ଡିତ, ସେତେବେଳେ ସମ୍ମିଳନୀର ଉଦ୍ଦେଶ୍ୟରେ ପରିବର୍ତ୍ତନ ଘଟିଥିବାରୁ ଉତ୍କଳ ସମ୍ମିଳନୀ ତିଷ୍ଠିବା ଅସମ୍ଭବ। ନିଜେ କଂଗ୍ରେସ କର୍ମୀ ଓ

ସଂଗଠକ ହୋଇ ମଧ୍ଯ ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ପରିବର୍ତ୍ତନକୁ ସେ ଗ୍ରହଣ କରି ନଥିଲେ। ସେଥିପାଇଁ ସେ ଜାତୀୟ କଂଗ୍ରେସ ଉଦ୍ଦେଶ୍ୟକୁ ଉତ୍କଳ ସମ୍ମିଳନୀ କାର୍ଯ୍ୟକ୍ରମରୁ ପୁନର୍ବାର ଉଠାଇ ଦେଇ ବାଲେଶ୍ୱରରେ ସମ୍ମିଳନୀ ଡକାଇ ଏବଂ ସୁଷ୍ଠାକାରରେ ଏ ସଂକ୍ରାନ୍ତରେ ନିୟମାବଳୀ ପ୍ରଣୟନ କରାଇବା ପାଇଁ ଆହ୍ୱାନ ଦେଇଥିଲେ। (ତତ୍ରୈବ) ଏପରି ନିର୍ଭିକ କଂଗ୍ରେସ ସଂଗଠକ ଓଡ଼ିଶାରେ ଖୁବ୍ କମ୍ ଥିଲେ ବୋଲି କୁହାଯାଇପାରେ। ତାଙ୍କ ଉଗ୍ର ଓଡ଼ିଆତ୍ୱର ପ୍ରମାଣ ସ୍ୱରୂପ ୧୯୨୮ ଡିସେମ୍ବରରେ ହୋଇଥିବା କଲିକତା ଉତ୍କଳ ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଂପାଦକ ପଦ ବରଣକୁ ଗ୍ରହଣ କରାଯାଇପାରେ।

୧୯୨୮ରେ ଜୟମଙ୍ଗଳ ବ୍ରାହ୍ମସମାଜ କାର୍ଯ୍ୟକ୍ରମକୁ ଉତ୍ସାହିତ କରିଥିଲେ। ୧୯୨୮ ଜାନୁଆରୀ ୨୩ରୁ ୨୭ ପର୍ଯ୍ୟନ୍ତ ସୁରୋଳ, କଇଠା ଓ ବ୍ରହ୍ମପୁରଠାରେ ଶ୍ରୀପଞ୍ଚମୀ ବ୍ରହ୍ମୋତ୍ସବ ମହାସମାରୋହ ସହିତ ଅନୁଷ୍ଠିତ ହୋଇଥିଲା ଏବଂ ତାଙ୍କ ସଭାପତିତ୍ୱରେ ଏକ ଶକ୍ତିଶାଳୀ ଉତ୍ସବ କମିଟି ଗଠିତ ହୋଇଥିଲା। ସେହି ବର୍ଷ ସେପ୍ଟେମ୍ବର ୨୮ରେ କଟକ ବ୍ରାହ୍ମମନ୍ଦିରଠାରେ ସଂସ୍କାରକ ବିଶ୍ୱନାଥ କରଙ୍କ ସଭାପତିତ୍ୱରେ ବ୍ରାହ୍ମସମାଜ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହୋଇଥିଲା। ଏହାର ସଂପାଦକ ରୂପେ ଜୟମଙ୍ଗଳ କାର୍ଯ୍ୟ କରିଥିଲେ। (ଉତ୍କଳ ଦୀପିକା, ୧୩ ଅକ୍ଟୋବର, ୧୯୨୮)

୧୯୨୮ରେ ନବୀନ ଭାବରେ ଗଂଜାମରେ ଦଣ୍ଡାସି ଜାତିର ସଂଗଠନ ହୋଇଥିଲା। ସମଗ୍ର ଗଂଜାମର ମଧ୍ଯ କୈବର୍ତ୍ତ ଓ ହାଡ଼ିମାନଙ୍କ ମଧ୍ୟରେ ଜାଗରଣ ଆରମ୍ଭ ହୋଇଥିଲା। ସରକାର ଦ୍ୱାରା ନିର୍ଦ୍ଧାରିତ ଏବଂ ତଥାକଥିତ ଉଚ୍ଚଜାତି ଦ୍ୱାରା ଅବହେଳିତ ଅନୁନ୍ନତ ଜାତିମାନଙ୍କର ସର୍ବାଙ୍ଗୀନ ଉନ୍ନତି ସାଧନ ପାଇଁ ୧୯୨୮ ଡିସେମ୍ବର ମାସରେ ଆଦିମ ଓଡ଼ିଆ ସମାଜ

ପ୍ରତିଷ୍ଠିତ ହୋଇଥିଲା। ନିତ୍ୟାନନ୍ଦ ମାନଧାତା ଏହି ସମାଜର ସଭାପତି ଥିଲେ ଏବଂ ଜୟମଙ୍ଗଳ ରଥ ଏହାର ସହକାରୀ ସଭାପତି ଥିଲେ। (ଉତ୍କଳ ଦୀପିକା, ଡିସେମ୍ବର ୨୨, ୧୯୨୮) ଆଦିମ ଓଡ଼ିଆ ସମାଜ ରଥଙ୍କ ନେତୃତ୍ୱରେ ବେଶ୍ ଅଗ୍ରଗତି ଲାଭ କରିଥିଲା। ଇଛାପୁରଠାରେ ଡିସେମ୍ବର ମାସ ମଧ୍ୟଭାଗ ୧୯୨୮ରେ ଏକ କର୍ମଶାଳାରେ ଜୟମଙ୍ଗଳ ଏହି ସମାଜ ତରଫରୁ ଆଦିମ ଓଡ଼ିଆ ଓ ଅନ୍ୟାନ୍ୟ ଜାତିର ଲୋକମାନଙ୍କୁ ମଦ୍ୟ, ଗୋମାଂସ ଓ ଅସ୍ପୃଶ୍ୟତା ବିଷୟ ନେଇ ଗୋଟିଏ ବକ୍ତୃତା ଦେଇଥିଲେ। (ଡିସେମ୍ବର ୨୯, ୧୯୨୮, ଉତ୍କଳ ଦୀପିକା)

୧୯୨୮ରେ ବ୍ରହ୍ମପୁର ବିଧବାଶ୍ରମ ପ୍ରସଙ୍ଗ ନେଇ ଶ୍ରୀବତ୍ସ ପଣ୍ଡା ଓ ଜୟମଙ୍ଗଳ ରଥ ବ୍ୟକ୍ତିଗତ ମତପାର୍ଥକ୍ୟ ସହିତ ବିତର୍କର ଆଶ୍ରୟ ନେଇଥିଲେ। ଏହି ପ୍ରସଙ୍ଗଟି ୧୯୨୮ ଉତ୍କଳ ଦୀପିକା ଏପ୍ରିଲ ୧୪, ଏପ୍ରିଲ ୨୧ ସଂଖ୍ୟାରେ ବିସ୍ତାରିତ ଭାବରେ ସ୍ଥାନ ପାଇଥିଲା। ସେଥିରୁ ଜୟମଙ୍ଗଳଙ୍କର ବ୍ୟକ୍ତିଗତ ଚିନ୍ତାଧାରା ଓ ସଂସ୍କାରକ ମନର କେତେକ ପରିଚୟ ମିଳିଥାଏ। ୧୯୨୮ ଏପ୍ରିଲ ୧୪ରେ ଉତ୍କଳ ଦୀପିକାରେ ଶ୍ରୀବତ୍ସ ପଣ୍ଡା ବିଧବାଶ୍ରମ ଶୀର୍ଷକ ଲେଖାରେ ଏ ବିତର୍କଟି ଆରମ୍ଭ କରିଥିଲେ। ଶ୍ରୀବତ୍ସ ପଣ୍ଡା ଲେଖିଥିଲେ - ବିଧବାଶ୍ରମ ପାଇଁ ବ୍ରହ୍ମପୁରଠାରେ ମୁଁ ଗୋଟିଏ ଘର ଖରିଦ କଲି। ତହିଁରେ ଆଶ୍ରମ ଖୋଲାହେବା ପର୍ଯ୍ୟନ୍ତ ସଂସ୍କାର ପତ୍ରିକା କାର୍ଯ୍ୟାଳୟ ସ୍ଥାପନ କରିବା ପାଇଁ ମେନେଜର ଶ୍ରୀମାନ୍ ଜୟମଙ୍ଗଳ ରଥଙ୍କୁ କହିଲି। ସେ ଏକାକୀ ପୁଣି ସୁରୋଳ ଯିବା ଆସିବା କରନ୍ତି ବୋଲି ସେ ଘରେ ରହିପାରିଲେ ନାହିଁ। ଜୟମଙ୍ଗଳ ଅବିବାହିତ ଥିଲେ। ବିବାହ ଇଛା କରିଥିଲେ। ନିଜେ ବିଧବା ବିବାହ କରି ବିଧବାଶ୍ରମର ପରିଚାଳକ ହେବା ପାଇଁ ମୁଁ ତାହାଙ୍କୁ ବିଶେଷ ଅନୁରୋଧ କଲି। କିନ୍ତୁ ବିଧବା ଅପେକ୍ଷା ନକରି ସେ ଅନ୍ୟତ୍ର କୌଣସି କୁମାରୀ କନ୍ୟା ବିବାହ କଲେ। ମୁଁ ଅନେକ ଅନୁସନ୍ଧାନ କଲି। କାହାକୁ ଉପଯୁକ୍ତ ପରିଚାଳକ ପାଇଲି ନାହିଁ। ତାପରେ

ବିଧବା ବିବାହ ସହାୟକ ସଭା ଲାହୋରଠାକୁ ପତ୍ର ଲେଖିଲି - ଯଦି ସେ ସେହି ବିଧବାଶ୍ରମ ପରିଚାଳକ ଭାର ଗ୍ରହଣ କରିବେ। ସଭା ତରଫରୁ ପଣ୍ଡିତ କାନ୍ତିସ୍ୱରୂପ ବିଦ୍ୟାଳଂକାର ଆସି ଘରଟା ଦେଖିଗଲେ। ମୋଠାରୁ ଅନ୍ୟ କିଛି ଅର୍ଥ ସାହାଯ୍ୟ ପୁଣି ସ୍ଥାନୀୟ ସାହାଯ୍ୟ ନ ପାଇଲେ ସଭା ସେହି ଆଶ୍ରମ ଭାର ଗ୍ରହଣ କରିପାରିବ କିନା, ବିଚାର କରାଯିବ ବୋଲି ଚାଲିଗଲେ। ପ୍ରାୟ ଛଅମାସ ପର୍ଯ୍ୟନ୍ତ ଲେଖାପଢ଼ା ଚାଲିଲା। କିନ୍ତୁ ଶେଷ ମିମାଂଶା ହେଲା ନାହିଁ। ଏଥି ମଧ୍ୟରେ ମୁଁ ଲାହୋର ଓ ଦିଲ୍ଲୀ ଆର୍ଯ୍ୟ ସମାଜକୁ ମଧ୍ୟ ଲେଖିଲି। ସେମାନେ ନୀରବ ରହିଲେ। ମୋହର ସେହି ଘରଟା ଆର୍ଯ୍ୟ-ସମାଜକୁ ଦେବା ପ୍ରସ୍ତାବ ଶୁଣି ଜୟମଙ୍ଗଳ ଭାଇ ବଡ଼ ଲଜ୍ଜିତ ଓ ଦୁଃଖିତ ହେଉଥିଲେ। କିନ୍ତୁ ବିଧବା ବିବାହ ସଭା ତରଫରୁ ଶାନ୍ତି ସ୍ୱରୂପ ବିଦ୍ୟାଳଂକାର କହିଲେ ସେ ସେମାନେ ନିଜେ ଆର୍ଯ୍ୟସମାଜୀ। କେହି ଆର୍ଯ୍ୟ ସମାଜ ହେଉ କିମ୍ବା ବିଧବାବିବାହ ସହାୟକ ସଭା ହେଉ ବିଧବାଶ୍ରମ ପରିଚାଳନ ଭାର ଗ୍ରହଣ କରିପାରନ୍ତି। ଏହିପରି କଥା ଥିଲା। କୌଣସି ବିଷୟ ନଛିଣ୍ଡି କେତେକାଳ ବହିଗଲା। ଏଣେ ଅନେକ ସମୟ ଘରଟା ଖାଲି ପଡ଼ି ରହିମୋତେ ମ୍ୟୁନିସ୍‌ପାଲଟି ଟିକସ୍ ବହନ କରିବାକୁ ପଡୁଥାଏ। କିଛି ଦିନ ପରେ ଦିଲ୍ଲୀରୁ ମୁଁ ଗୋଟାଏ ସମ୍ବାଦପତ୍ରରୁ ଶୁଣିଲି ଯେ କେହି ଜଣେ ଆର୍ଯ୍ୟସମାଜୀ କୌଣସି ବିଧବାଶ୍ରମକୁ ଯାଇ ବିବାହ ହେବାପାଇଁ କୌଣସି ବିଧବା କନ୍ୟାକୁ ଚାହିଁଲାରୁ ସେ ସେଥିପାଇଁ କେତେ ଟଙ୍କା ଦେବେ ବୋଲି ତାଙ୍କୁ ପଚରାଗଲା ଯେପରି କି ସେହି ବିଧବାଶ୍ରମଟା ଗୋଟିଏ ବିଧବା ଦୋକାନ। ସେ ଯାହାହେଉ ବିଧବାଶ୍ରମରେ ଅବଶ୍ୟ କେତେଟା ବିଧବାର ବିବାହ ହୋଇଯାଏ ସତ୍ୟ, କିନ୍ତୁ ତଦ୍ୱାରା ସମାଜର ମତିଗତି ବଦଳିପାରେ ନାହିଁ। ପୁଣି ବିଧବାଶ୍ରମ ସ୍ଥାପିବା ଅପେକ୍ଷା ସମାଜରୁ କେତେ ଜଣ ପରିବାରଙ୍କୁ ଘେନି କେତେଟା ବିବାହ ଚଳାଇ ନେବା

ଶ୍ରେୟସ୍କର ପନ୍ଥା ବୋଲି ମୁଁ ଭାବିଲି। ସୁତରାଂ ଅନ୍ୟ କାହାକୁ ଅପେକ୍ଷା ନକରି ଘରଟା ବିକ୍ରୟ କରିଦେଲି। ବିଧବାଶ୍ରମ ପାଇଁ ମୁଁ ସେହି ଘରଟା ବିଧବାବିବାହ ସହାୟକ ସଭାକୁ ଦେବାକୁ ନାସ୍ତି କରିନାହିଁ। ବରଂ ସଭା ପକ୍ଷରୁ କୌଣସି ଯତ୍ନ ବା ଆଗ୍ରହ ନ ଦେଖି ଅନ୍ୟ ପ୍ରକାର ବନ୍ଦୋବସ୍ତ କରାଯାଇପାରେ କି ନା ମୁଁ ଭାବୁଥିଲା ବେଳେ ମୁଁ ଘର ଦେବାକୁ ନାସ୍ତି କଲି ବୋଲି ଜୟମଙ୍ଗଳ ଭାଇ ସବୁ ଖବରକାଗଜରେ ପ୍ରଚାର କରିଦେଲେ। ସେ ଯାହା ହେଉ କ୍ଷୋଭର ବିଷୟ ଏହି ଯେ ଅବିବାହିତ ଉତ୍ସାହୀ ଯୁବକମାନଙ୍କ ପକ୍ଷରେ ମଧ୍ୟ କହିବା ଓ ଲେଖିବା ବଡ଼ ଚତୁରୀ କରିବା ବଡ଼ ମୁସ୍କିଲ। ବିଧବା ବିବାହ ସଂସ୍କାର ସକାଶେ ଅବିବାହିତ ଯୁବକମାନେ ଅଣ୍ଟାଭିଡ଼ି ନବାହାରିଲେ ସେପରି ଦରବୁଢ଼ା ଗୁଡ଼ାକ ଯେତେ ରଡ଼ି କଲେ ହେଁ କିଛି ଫଳନାହିଁ। ଏହା ହିଁ ବ୍ରହ୍ମପୁର ବିଧବାଶ୍ରମର ଚହଳର ଘଟଣାକ୍ରମ। ଏହିସବୁ ଭିତର କଥା ବୋଧହୁଏ ଜାଣି ନପାରି ମୋହର କେହି କେହି ବଂଧୁ ମୁଁ ବିଧବାଶ୍ରମ ପାଇଁ ଦେଇଥିବା ଘର ପୁଣି ନେଇଗଲି ବୋଲି ମୋ ପ୍ରତି କିଛି ଗୋଟାଏ ଆକ୍ଷେପ କରନ୍ତି। ନିରପେକ୍ଷ ପାଠକମାନେ ଏହି ଘଟଣା ଯାହା ବୁଝିବେ।

ଏହି ଲେଖା ପ୍ରକାଶ ପାଇବା ପରେ ଉତ୍କଳ ଦୀପିକାରେ ଅପ୍ରେଲ ୨୧, ୧୯୨୮ ସଂଖ୍ୟାରେ ଏହି ପ୍ରସଙ୍ଗ ଉପରେ ସ୍ପଷ୍ଟୀକରଣ ଦେଇ ଜୟମଙ୍ଗଳ ରଥ ଦୀର୍ଘ ଉତ୍ତର ଦେଇଥିଲେ। ରଥ ସେଥିରେ ଲେଖିଥିଲେ – ପଣ୍ଡା ମହାଶୟ ବିଧବାଶ୍ରମ ପାଇଁ ବ୍ରହ୍ମପୁରଠାରେ ଗୋଟିଏ ଘର କିଣିଲେ। କିଛି କାଳ ସେ ଘରୁ ଭଡ଼ା ଆଦାୟ ହେବାପରେ ପୁଣି ବିକି ଦେଲେ। ଏଥିପାଇଁ ପ୍ରାୟ ସମସ୍ତେ ତାଙ୍କ ପ୍ରତି ଗୋଟାଏ ଆକ୍ଷେପ କରନ୍ତି। ବିଧବାଶ୍ରମ ପରିଚାଳନା ଭାର ଗ୍ରହଣ କରିବାକୁ ସେ ବିଧବା ବିବାହ ସହାୟକ ସଭା ଲାହୋରଠାକୁ ପତ୍ର ଲେଖିଥିଲେ। ସଭାରେ ତାଙ୍କ ପତ୍ର ବିଚାର ହୋଇ

ଉକ୍ତ ଭାର ଗ୍ରହଣ କରିବା ସ୍ଥିର ହେଲା। ଦାନପତ୍ର ଲେଖି ରେଜେଷ୍ଟରୀ କରିଦେବାକୁ ଏବଂ ରେଜେଷ୍ଟରୀ କରିବା ପୂର୍ବରୁ ଦାନପତ୍ରର ପାଣ୍ଡୁଲିପି ସଭାର ମଂଜୁରୀ ପାଇଁ ପଠାଇବାକୁ ଉକ୍ତ ସଭାର ସଂପାଦକ ଲେଖିଥିଲେ। ମୁଁ ମଧ୍ୟ ଏକଥା ପଣ୍ଡାବାବୁଙ୍କୁ ଜଣାଇଥିଲି। ଏଥିରେ ସେ କହିଲେ ଯେ ସଭା ମିମାଂଶା କରିବାକୁ ଏତେ କାଳ ବିଳମ୍ବ କଲେ। ବିଧବା ବିବାହର ଅନ୍ୟପନ୍ଥା ସେ ଭାବୁଛନ୍ତି। ଏଣୁ ଏ କ୍ଷଣି ସେ ଦାନପତ୍ର ଲେଖି ପଠାଇ ପାରିବେ ନାହିଁ। ମୁଁ ଲାହୋରଠାକୁ ତାଙ୍କର ଏ କଥା ଲେଖିଲି ଏବଂ କିଛି କାଳ ଅପେକ୍ଷା କରିବାକୁ କହିଲି କିନ୍ତୁ ସେଠାରୁ ଉତ୍ତର ଆସିଲା ଯେ ପଣ୍ଡା ମହାଶୟ ନାସ୍ତି କରିଥିବାରୁ ସେମାନେ ଆଉ ସେଥିପାଇଁ ବଳାଇବାକୁ ଇଚ୍ଛା କରନ୍ତି ନାହିଁ। କାରଣ ଦାନ ସ୍ୱଚ୍ଛମନରେ କରାହୁଏ। ମୁଁ ଏକଥା ପଣ୍ଡାବାବୁଙ୍କଠାକୁ ଲେଖିଲି। ତଥାପି ସେ ଘର ଦେବା ବିଷୟରେ କିଛି କହିଲେ ନାହିଁ। ଏପରିକି କିଛି ଦିନ ପରେ କହିଲେ ଯେ ବିଧବାଶ୍ରମମାନଙ୍କରେ ତାଙ୍କର ବିଶ୍ୱାସ ନାହିଁ। ବ୍ରହ୍ମପୁରରେ ବିଧବାଶ୍ରମ ପ୍ରତିଷ୍ଠାର କଥା ପ୍ରାୟ ସବୁ ସମ୍ବାଦପତ୍ରରେ ଓ ସହସ୍ର ସହସ୍ର ବିଜ୍ଞାପନ ଦ୍ୱାରା ବ୍ରହ୍ମପୁର ବିଧବା ବିବାହ ସହାୟକ ସଭା ପକ୍ଷରୁ ପ୍ରଚାରିତ ହୋଇଥିଲା। ସୁତରାଂ ଉକ୍ତ ସଭା ପକ୍ଷରୁ ପୁଣି ଲାହୋର ନିଷ୍ପତ୍ତି ସମ୍ବାଦ ପ୍ରଚାର କରାଗଲା। ବ୍ରହ୍ମପୁର ସଭା ଲାହୋର ସଭାର ଶାଖା ଥିବାରୁ ପଣ୍ଡା ମହାଶୟଙ୍କର ଲାହୋର ସଭା ସହିତ ଚଳିଥିବା କଥାସବୁ ଆମ୍ଭେମାନେ ଶୁଣି ପାରିଅଛୁ। କିନ୍ତୁ ଆର୍ଯ୍ୟ ସମାଜ ସହିତ କି ଚିଠିପତ୍ର ଚଳିଥିଲା ତାହା ଜାଣିବା ଉପାୟ ଆମ୍ଭମାନଙ୍କର ନାହିଁ। ପଣ୍ଡା ମହାଶୟ ଲେଖିଅଛନ୍ତି ଯେ ତାଙ୍କର ସେ ଘରଟା ଆର୍ଯ୍ୟସମାଜକୁ ଦେବା ପ୍ରସ୍ତାବ ଶୁଣି ମୁଁ ବଡ଼ ଲଜ୍ଜିତ ଓ ଦୁଃଖିତ ହେଉଥିଲି, କିନ୍ତୁ ଏହା ସତ୍ୟ ନୁହେଁ। ଏହା ହେବାର କୌଣସି କାରଣ ନାହିଁ। ପଣ୍ଡା ମହାଶୟ ଏପରି କଥା କାହିଁକି ଓ କିପରି ଲେଖିଥିଲେ

ମୁଁ ବୁଝିପାରୁ ନାହିଁ। ବିଧବାଶ୍ରମରେ କୌଣସି ଧର୍ମ ସମାଜର ସଂପର୍କ ରହିବ ନାହିଁ ବୋଲି ଲାହୋର ସଭା ଧରି ବସିଥିଲେ ଏବଂ ପଣ୍ଡା ମହାଶୟ ସେଥିରେ ଆର୍ଯ୍ୟସମାଜ ରଖିବାକୁ ଇଚ୍ଛୁକ ଥିଲେ। ଏତିକିବେଳେ ମୁଁ ତାଙ୍କର ଆର୍ଯ୍ୟ ସମାଜ ସ୍ଥାପନ ସଂପର୍କରେ ବହୁ କଥା ଲେଖିଛି। ଜଗତର ସମସ୍ତ ଧର୍ମ ସମାଜ ମୋର ଆଦରର ବସ୍ତୁ ଏବଂ ଧର୍ମମୂଳକ ସମାଜ ସଂସ୍କାରରେ ମୋର ପୂର୍ଣ୍ଣ ଆଶା। ଏକଥା କି ପଣ୍ଡା ମହାଶୟ ଜାଣନ୍ତି ନାହିଁ? ପଣ୍ଡା ମହାଶୟଙ୍କ ବିଧବାଶ୍ରମ ସ୍ଥାପନ ସମ୍ବନ୍ଧେ ମତ ବଦଳିଅଛି। ସେଥିରେ ମୋର ଆଶ୍ଚର୍ଯ୍ୟ କିଛି ନାହିଁ। ଅବଶ୍ୟ ସାବଧାନ ହେଲେ ବିଧବାଶ୍ରମ ବିଧବା ଦୋକାନ ହେବ ନାହିଁ ଏବଂ ଚେଷ୍ଟା କଲେ ବିଧବାଶ୍ରମ ପରିଚାଳନା ପାଇଁ କର୍ମୀ ମିଳିବେ। ତଥାପି ପଣ୍ଡା ମହାଶୟ ଯେତେବେଳେ ବିଧବାଶ୍ରମ ସ୍ଥାପିବା ଅପେକ୍ଷା ସମାଜରୁ କେତେଜଣ ପରିବାରଙ୍କୁ ଘେନି କେତେଟା ବିବାହ ଚଳାଇଦେବା ଶ୍ରେୟସ୍କର ପନ୍ଥା ବୋଲି ଭାବି ଘରଟା ବିକ୍ରି କରି ଦେଇଅଛନ୍ତି, ତେବେ ଦେଶବାସୀଙ୍କର ତାଙ୍କଠାରେ ଆହୁରି କିଛି ଆଶା କରିବାର ରହିଲା। ପ୍ରଭୁ ତାଙ୍କର ଶୁଭ ସଂକଳ୍ପ କାର୍ଯ୍ୟରେ ପରିଣତ କରନ୍ତୁ।

ଏ ବାଦ୍ ମୁଁ ବିଧବା ଅପେକ୍ଷା ନ କରି ଅନ୍ୟତ୍ର କୌଣସି କୁମାରୀ କନ୍ୟା ବିବାହ କଲି ବୋଲି ପଣ୍ଡା ମହାଶୟ ଦୁଃଖିତ ହୋଇଅଛନ୍ତି। କିନ୍ତୁ ଏଥିରେ ଦୁଃଖିତ ହେବାର କୌଣସି କାରଣ ନାହିଁ। ବିବାହକୁ ମୁଁ ଗୋଟାଏ ମାନବକୃତ ଘଟଣା ମନେ କରୁନାହିଁ। ତା ସଂପୂର୍ଣ୍ଣ ପ୍ରଜାପତି ଘଟସୂତ୍ର। ଯେଉଁ ବିବାହରେ ମନୁଷ୍ୟର ହାତ ଥାଏ ସେ ବିବାହ ଦୋଷଯୁକ୍ତ କୁସଂସ୍କାରପୂର୍ଣ୍ଣ ହୋଇ ପଡ଼ିଥାଏ। ଏକ ସମୟରେ ମୋର ବିବାହ ପାଇଁ ପିତାମାତା ଯେତେବେଳେ ଆନ୍ଦୋଳନ ଓ ବିପୁଳ ଆୟୋଜନ କରିଥିଲେ ସେତେବେଳେ ମୁଁ ଅବିବାହିତ ରହିବା ସ୍ଥିର କରିଥିଲି। ମୋର ସେ ସମୟରେ କୌଣସି ଗୋଟିଏ ଧର୍ମଧାରଣା ନଥିଲା, ଅଥଚ ସହଧର୍ମିଣୀ

ପାଇବା ସମ୍ବନ୍ଧେ ନିରାଶା ଆସିଥିଲା । କ୍ରମେ ଧର୍ମର ଆଲୋକ ଲାଭ କଲି । ସମାଜର କୁସଂସ୍କାର ଦୂର କରି ସହଧର୍ମିଣୀ ଲାଭ କରିବା ପାଇଁ ବଳ ଆସିଲା । ବିବାହ ଇଛା କଲି । ବିଧବାବିବାହ ସହାୟକ ସଭାମାନଙ୍କୁ ଲେଖିଥିଲି । ମୋହର ସହଧର୍ମିଣୀ ହେବା ଭଳି କୌଣସି ବିଧବା ଥିଲେ ଜଣାଇବାକୁ । କିନ୍ତୁ ପାଇଲି ନାହିଁ । ଭଗବାନଙ୍କ ବିଚିତ୍ର ବିଧାନ । ହଠାତ୍ ହିମାଳୟ ପାଦଦେଶରେ ଜଳପାଇଗୁଡ଼ିଠାରେ ମୋର ବିବାହ ସଂପନ୍ନ ହୋଇ ଯାଇଅଛି । ବିଧବା ପାଇ ନଥିଲେ ହେଁ ମୁଁ ଯୁବତୀ ବିବାହ କରିଅଛି । ଯୁବତୀ ବିବାହ ପ୍ରଚଳନ ଦ୍ୱାରା ବିଧବା ବିବାହ ଆନ୍ଦୋଳନ ସଫଳ ହେଉଅଛି । ଏକଥା ଲୋକେ ବେଶ୍ ବୁଝିପାରୁଛନ୍ତି । ଏଥିପାଇଁ ସେ ଦିନ ପଣ୍ଡା ମହାଶୟ ବିଧବା ବିବାହ ଆନ୍ଦୋଳନ ଆରମ୍ଭ କରି ନିଜ କନ୍ୟାକୁ ବାଲ୍ୟାବସ୍ଥାରେ ବିବାହ ଦେଇ ପକାଇବାରୁ ଦେଶବାସୀ ଏହାର ତୀବ୍ର ପ୍ରତିବାଦ ଆରମ୍ଭ କରିଥିଲେ । ଯୁବତୀ ହୋଇ ନଥିବା ବେଳେ କୌଣସି ବିଧବା କନ୍ୟାର ବିବାହ ଦିଆଗଲେ ତାହା ମୋ ମତରେ ବିଧବା ବିବାହ ଆନ୍ଦୋଳନର ପୋଷକତା କରିବ ନାହିଁ; କିନ୍ତୁ ମୋର ବିଶ୍ୱାସ ବିଧବା ବିବାହ ଆନ୍ଦୋଳନରେ ମୁଁ ସହାୟତା କରିଛି ।

ଏହି ଦୀର୍ଘ ବିତର୍କରୁ ସ୍ପଷ୍ଟ ଜଣାପଡ଼େ ଜୟମଙ୍ଗଳ ତାଙ୍କର ତରୁଣ ପର୍ଯ୍ୟାୟରେ ସଂସ୍କାରକ ହିସାବରେ ଚରମପନ୍ଥୀ ନଥିଲେ; କିମ୍ବା ସଂସ୍କାରକ ବୋଲି ଲୋକମାନଙ୍କୁ ଦେଖାଇବା ପାଇଁ ସଂସ୍କାରକ ହୋଇ ନଥିଲେ । ବିଧବା ବିବାହ ସଂପର୍କିତ ତାଙ୍କର ସ୍ପଷ୍ଟୀକରଣ ଏବଂ ତାଙ୍କର ଯୁବତୀ ବିବାହ ସପକ୍ଷରେ ଯୁକ୍ତିରୁ ତାଙ୍କର ହେତୁବାଦୀ ଦୃଷ୍ଟିକୋଣ ସହଜରେ ବାରି ହୋଇଯାଏ ।

॥୪॥

୧୯୨୯ରୁ ୧୯୪୦ ମଧ୍ୟରେ ଜୟମଙ୍ଗଳଙ୍କର ସଂସ୍କାରକ ଜୀବନର ବହୁମୁଖୀ କାର୍ଯ୍ୟକ୍ରମ ପ୍ରଲମ୍ବିତ ହୋଇଥିଲା । ଏହି ପର୍ଯ୍ୟାୟରେ

ସେ ପତିତପାବନ ମିଶନର ସଂସ୍କାରଧର୍ମୀ କାର୍ଯ୍ୟାମାଳାର ପ୍ରସାର, ବ୍ରହ୍ମପୁରରେ ସାଧନାଶ୍ରମର ଅଗ୍ରଗତିରେ ପ୍ରଚେଷ୍ଟା, ସମାଜ ସଂସ୍କାର ସମ୍ମିଳନୀ ପାଇଁ ଉଦ୍ୟମ, ମହିମା ଧର୍ମ ଆନ୍ଦୋଳନର ପ୍ରସାର ପାଇଁ ପ୍ରଚେଷ୍ଟା, ଉତ୍କଳ ସମ୍ମିଳନୀ ପୁନର୍ଗଠନ, ସାରଦା ଆଇନ ପରି ବହୁ ଗଠନାତ୍ମକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ସଫଳତା ଲାଭ କରିଥିଲେ। ୧୯୩୦ ବେଳକୁ ଜୟମଙ୍ଗଳଙ୍କର ସଂସ୍କାରକ ଭାବମୂର୍ତ୍ତି ଅତ୍ୟୁଜ୍ଜ୍ୱଳ ହୋଇ ଫୁଟି ଉଠିଥିଲା। ସେ ଉତ୍କଳ ସାଧନାଶ୍ରମ କର୍ମୀ ହିସାବରେ ଗ୍ରାମ ସଂଗଠନ ତଥା ଅନୁନ୍ନତ ଜାତିମାନଙ୍କର ଉନ୍ନତିବିଧାନ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ। ସେତେବେଳେ ସେ ସୁରଳା ଗ୍ରାମ ପଞ୍ଚାୟତର ପ୍ରେସିଡେଣ୍ଟ ଥିଲେ। ୧୯୩୦ରେ ଲବଣ ସତ୍ୟାଗ୍ରହ ବେଳେ ସେ ବେଆଇନ୍ ଲୁଣ ମାରିବାକୁ ପସନ୍ଦ କରି ନଥିଲେ। ତାଙ୍କ ମତରେ ବହୁ ଧନବ୍ୟୟରେ ଅଳ୍ପ ଲବଣ ପ୍ରସ୍ତୁତ ହୁଏ। ସେଥିପାଇଁ ସେ ସତ୍ୟାଗ୍ରହୀମାନଙ୍କୁ କହିଥିଲେ ଲୁଣମରା ଛାଡ଼ି ସୁରଳା ପରି ସ୍ଥାନ ମାନଙ୍କରେ ଲୁଣଗାଳି ସ୍ଥାପନ କରିବା ପାଇଁ ଚେଷ୍ଟା କରିବା ଉଚିତ। (ସତ୍ୟ ସମାଚାର, ଜୁଲାଇ ୫, ୧୯୩୦)

୧୯୩୧ରେ ବ୍ରହ୍ମପୁର ସାଧନାଶ୍ରମର ପୁନର୍ଗଠନ ହୋଇଥିଲା। ସୁରଳା ସାଧନାଶ୍ରମର ଅଫିସ୍ ବ୍ରହ୍ମପୁର ସାଧନାଶ୍ରମକୁ ସ୍ଥାନାନ୍ତରିତ କରାଯାଇଥିଲା। ଏହି ସାଧନାଶ୍ରମ (ବ୍ରହ୍ମପୁରର) ପାଇଁ ସଭାପତି ହେମଚନ୍ଦ୍ର ସରକାର ଏବଂ ଜୟମଙ୍ଗଳ ରଥ ଜେନେରାଲ ସେକ୍ରେଟାରୀ ରୂପେ ନିର୍ବାଚିତ ହୋଇଥିଲେ। (ଆଶା, ୧୩ ଏପ୍ରିଲ ୧୯୩୧) ଉତ୍କଳ ସାଧନାଶ୍ରମର ସଂପାଦକ ହିସାବରେ ଜୟମଙ୍ଗଳ ଏହାର ସୁରଳା ଅଫିସରୁ ୨୨ ଫେବୃଆରୀ ୧୯୩୧ରେ ତେଲୁଗୁ ଓଡ଼ିଆ ଭାଷା ସମସ୍ୟା ନେଇ ଆଶା ସଂପାଦକଙ୍କ ନିକଟକୁ ଏକପତ୍ର ଲେଖିଥିଲେ। ମାର୍ଚ୍ଚ ୨, ୧୯୩୧ରେ ପ୍ରକାଶିତ ଏହି ପତ୍ରରେ ଜୟମଙ୍ଗଳ ଲେଖିଥିଲେ :

ମୁଁ ଲାଂଜିପଲ୍ଲି, ଗୋଳାବନ୍ଧ ଏବଂ ଉଦ୍ୟାନଖଣ୍ଡ ମାଣିକ୍ୟପୁରଠାରେ ଏବଂ ସୁରଳାରେ ଦେଖିଲି ଏନ୍ୟୁମରେଟରମାନେ ଓଡ଼ିଆମାନଙ୍କର ସାଧାରଣ ବ୍ୟବହାରରେ ଅନ୍ୟ ଭାଷା "ତେଲୁଗୁ" ବୋଲି ଲେଖିବାରେ ଲାଗିଛନ୍ତି। କିନ୍ତୁ ସେପରି ତେଲୁଗୁ ମାନଙ୍କର "ଓଡ଼ିଆ" ବୋଲି ଲେଖାଯାଉନାହିଁ। ଅନଭିଜ୍ଞ ଲୋକେ ଏନୁମରେଟର୍ ରୂପେ ନିଯୁକ୍ତ ହୋଇଅଛନ୍ତି ଏବଂ ଉଚ୍ଚ କର୍ମଚାରୀମାନେ ଯାହା କହୁଛନ୍ତି ସେମାନେ ତାହା ଲେଖୁଛନ୍ତି। ତେଲୁଗୁ ସୁପରଭାଇଜର୍‌ମାନଙ୍କ ଆଦେଶ ପାଇ ଓଡ଼ିଆ ଏନ୍ୟୁମରେଟର୍‌ମାନେ ଏପରି ସବୁ କାର୍ଯ୍ୟ କରୁଅଛନ୍ତି। ସାଧନାଶ୍ରମ ମିଶନ୍‌ର ଇଛାପୁର କେନ୍ଦ୍ରରୁ ଖବର ଆସିଅଛି ଯେ ସେଠାରେ ଏବଂ ନିଟବର୍ତ୍ତୀ ପଲ୍ଲୀମାନଙ୍କରେ ମଧ୍ୟ ଏପରି ଲେଖା ଯାଇଅଛି। ସାଧାରଣରେ ବହୁ ସଂଖ୍ୟକ ଓଡ଼ିଆ ତେଲୁଗୁ ଭାଷା ବ୍ୟବହାର କରନ୍ତି। ଏକଥାଦେଖାଇବା ପାଇଁ ଏହି ଉଦ୍ୟମ ହୋଇଅଛି। ଅନେକ ସ୍ଥାନରେ ଏପରି ହୋଇଥିବ ଏବଂ ଆହୁରି କେତେ କଣ ଭିଆଣ କରାଯାଇଥିବ। ଏଥିଯୋଗୁଁ ଗଞ୍ଜାମ ଜିଲାରେ ଏବଂ ଏପରି ଅନ୍ୟାନ୍ୟ ଜିଲାରେ ପଞ୍ଚାୟତମାନେ ବସି ଜନଗଣନାର ଶେଷ ରିପୋର୍ଟ ପରୀକ୍ଷା କରି ପ୍ରକାଶ କରିବାକୁ ହେବ। ଶୀଘ୍ର ପଞ୍ଚାୟତମାନ ଗଢ଼ିବା ସକାଶେ "ସାଧନାଶ୍ରମ ମିଶନ୍" ପକ୍ଷରୁ ବଡଲାଟଙ୍କ ଠାକୁ ଲେଖାଗଲାଣି। ଏପରି ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କ ପକ୍ଷରୁ ଏବଂ ସବୁ ସ୍ଥାନମାନଙ୍କରେ ସଭା କରି ସେହି ପକ୍ଷରୁ ବଡଲାଟଙ୍କ ଠାକୁ ତାର ପଠାଇବାକୁ ହେବ।"

ସୁରଳାରେ ସାଧନାଶ୍ରମ ଅଫିସ ଥିବାବେଳେ ଜୟମଙ୍ଗଳ ଓଡ଼ିଆମାନଙ୍କର ଜାତୀୟତା ଜାଗରଣ ପାଇଁ ବାରଂବାର ଉଦ୍‌ବୋଧନ ଦେଇଥିଲେ। ସେଥିପାଇଁ ବିଭିନ୍ନ ପ୍ରସ୍ତାବ ଖବରକାଗଜମାନଙ୍କରେ ପ୍ରକାଶ କରିଥିଲେ। ପ୍ରସ୍ତାବଗୁଡ଼ିକ କାର୍ଯ୍ୟକାରୀ କରିବା ପାଇଁ ସେ ମତ ଦେଇଥିଲେ। ଆଶା ସମ୍ବାଦପତ୍ରରେ ୧୯୩୧ ମାର୍ଚ୍ଚ ୯ ସଂଖ୍ୟାରେ ସେହି ସବୁ ପ୍ରସ୍ତାବ ଗୁଡ଼ିକ ଉପସ୍ଥାପିତ ହୋଇଥିଲା।

୧. ଉତ୍କଳ ସମ୍ମିଳନୀର ପୁନର୍ଗଠନ ଉପରେ ଗୁରୁତ୍ୱ ଦେଇ ସେ ଲେଖିଥିଲେ ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ସିଂହଭୂମି, ମେଦିନିପୁର ଇତ୍ୟାଦି ଜିଲାମାନଙ୍କରେ ଶୀଘ୍ର ଜିଲା ସମିତିମାନ ଗଠନ କରିବାକୁ ଉଦ୍ୟମ ହେବା ଉଚିତ।

୨. ଉତ୍କଳ ସମ୍ମିଳନୀ ପାଣ୍ଠିର ସୃଷ୍ଟି।

୩. ନୂତନ ଉତ୍କଳ ପ୍ରଦେଶ ପାଇଁ ଗୋଟିଏ ସ୍କିମ୍ ପ୍ରସ୍ତୁତ କରି ପ୍ରକାଶ କରିବା ଉଚିତ।

୪. ଜିଲାର ଓଡ଼ିଆ ଜାତିସଭାମାନଙ୍କୁ ଉତ୍କଳ ସମ୍ମିଳନୀ ଜିଲା ସମିତିମାନଙ୍କ ସହିତ ସଂପୃକ୍ତ ରଖିବା ପାଇଁ ଚେଷ୍ଟା କରାଯିବା ଉଚିତ।

୫. ଜନଗଣନାର ଶେଷ ରିପୋର୍ଟ ପ୍ରକାଶ ପାଇବା ପୂର୍ବରୁ ତାହାର ପରୀକ୍ଷା କରିବାକୁ ପ୍ରତିଦ୍ୱନ୍ଦୀ ଥିବା ଜିଲାମାନଙ୍କରେ ପ୍ରତିଦ୍ୱନ୍ଦୀ ଜାତିର ପ୍ରତିନିଧିମାନଙ୍କୁ ନେଇ ଏକ ଏକ ପଞ୍ଚାୟତ ଗଢ଼ିବା ସକାଶେ ସରକାରଙ୍କୁ ଅନୁରୋଧ କରିବା ଉଚିତ। ସେ ମତ ପ୍ରକାଶ କରିଥିଲେ ଯେ ଜନଗଣନା ଶେଷ ହେବାକୁ ଅନେକ ଦିନ ଥିବାରୁ ସରକାର ଉତ୍କଳର ସୀମା ନିର୍ଦ୍ଦେଶ କରିବା ପାଇଁ ଆୟୋଜନ କରୁଥିବା ବେଳେ ଓଡ଼ିଆମାନଙ୍କୁ ଜାଗ୍ରତ କରିବାକୁ ହେବ। ଉତ୍କଳ ପ୍ରଦେଶର ସବୁ ଦିଗରେ ଉନ୍ନତି କରିବା ପାଇଁ ଗଠନଶୀଳ ଅନେକ ପ୍ରକାର କାର୍ଯ୍ୟଲୋଡ଼ା। ଉତ୍କଳର ଉନ୍ନତି ଆଶା ପ୍ରାଣରେ ବହନ କରି ଅଗ୍ରସର ହେବାକୁ ସେ ଉଦ୍‌ବୋଧନ ଦେଇଥିଲେ। ଉଦ୍ୟମ ଶକ୍ତିଶାଳୀ ହେଲେ ଜନଗଣନା ପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ମୁଣ୍ଡ ଟେକି ଉଠିବ। ସୁରଳା ସାଧନାଶ୍ରମକୁ

କେନ୍ଦ୍ର କରି ଜୟମଙ୍ଗଳ ଓଡ଼ିଆ ଜାତୀୟତାର ପରିପ୍ରକାଶ ଏବଂ ଓଡ଼ିଆ ପରିଚିତିର ନିର୍ମାଣରେ ବେଶ୍ ସକ୍ରିୟ ହୋଇ ଉଠିଥିଲେ ।

ସୁରଳା ସାଧନାଶ୍ରମ ଅଫିସ୍ ବ୍ରହ୍ମପୁରକୁ ଆସିବା ପରେ ଜୟମଙ୍ଗଳ ଉଭୟ ସାଧନାଶ୍ରମର ଜେନେରାଲ ସେକ୍ରେଟାରୀ ରୂପେ ନିଖିଳ ଉତ୍କଳ ଆସ୍ତିକ ସାମାଜିକ ସମ୍ମିଳନୀ ବ୍ରହ୍ମପୁରରେ ମେ ୧୯୩୧ରେ କରାଇବା ପାଇଁ ଉଦ୍ୟମ କରିଥିଲେ । ଏହି ସମ୍ମିଳନୀ ସଂଯୁକ୍ତ ଉତ୍କଳ ସମ୍ମିଳନୀ ମଣ୍ଡପରେ ହେବାର ସ୍ଥିର ହୋଇଥିଲା । ଏହି ସମ୍ମିଳନୀ ଆସ୍ତିକତା ଉଦ୍ୟମ, ସମାଜ ସଂସ୍କାର ଓ ସେବାକାର୍ଯ୍ୟ ପାଇଁ ଡକାଯାଇଥିଲା । (ଉତ୍କଳ ଦୀପିକା, ଏପ୍ରିଲ ୧୧, ୧୯୩୧)

ଏପ୍ରିଲ ୧୯, ୧୯୩୧ରେ ବ୍ରହ୍ମପୁର ଉତ୍କଳାଶ୍ରମଠାରେ ସଂସ୍କାର ସମ୍ମିଳନୀ କରାଯାଇଥିଲା । ସମାଜ ସଂସ୍କାର ସକାଶେ ଏକ ସଂସ୍କାର ସଂଘ ସ୍ଥାପିତ ହୋଇଥିଲା । ଏଥିରେ ପ୍ରତିମାପୂଜା ସଂପର୍କିତ କୁସଂସ୍କାର ସବୁର ବର୍ଜନ, ଆମିଷ ଭୋଜନ ଏବଂ ମାଦକ ଦ୍ରବ୍ୟ ସେବନ ନିଷେଧ, ଅନୁନ୍ନତ ଜାତିର ଅବସ୍ଥାର ଉନ୍ନତି, ବିବାହ, ଶିକ୍ଷା, ସଂସ୍କାର, ସଂପତ୍ତି ପୁଣି ସାମାଜିକ, ଆଧ୍ୟାତ୍ମିକ ଓ ଅନ୍ୟାନ୍ୟ କର୍ମକାଣ୍ଡରେ ସ୍ତ୍ରୀ ପୁରୁଷର ସମାନ ଅଧିକାର, ଜାତିଗତ ଅସ୍ପୃଶ୍ୟତା, ଋତୁ ଓ ପ୍ରସବକାଳୀନ ଅସ୍ପୃଶ୍ୟତା ପୁଣି ଜାତାଶୌଚ ଓ ମୃତାଶୌଚ ଅସ୍ପୃଶ୍ୟତାର ଦୂରୀକରଣ, ଭୋଜନପାନ ଏବଂ ବିବାହାଦି ସମ୍ବନ୍ଧରେ ଜାତିଭେଦ ଧରିବା ବିରୁଦ୍ଧରେ ଅଭିଯାନ, ବାଲ୍ୟବିବାହ ନିରାକରଣ, ବିବାହରେ ବରକନ୍ୟା ଶୁଳ୍କପ୍ରଥାର ବିରୋଧ ଇତ୍ୟାଦି ଏହି ସମ୍ମିଳନୀରେ ଆଲୋଚିତ ହୋଇଥିଲା । ସଂସ୍କାରସଂଘ ମାଧ୍ୟମରେ ଏହିସବୁର ଦୂରୀକରଣ ପାଇଁ ଉଦ୍ୟମ କରାଯିବ ବୋଲି ସ୍ଥିର ହୋଇଥିଲା । ଏହି ସଂସ୍କାରସଂଘର ନିୟମାବଳୀ ଆଦି ପ୍ରଣୟନ ଓ ପ୍ରଚାର, ଅର୍ଥ ସଂଗ୍ରହ ଓ କେନ୍ଦ୍ର ସଂଗଠନ କରିବା ଭାର ଜୟମଙ୍ଗଳ ରଥ ଶ୍ରୀବତ୍ସ ପଣ୍ଡା ଓ ବ୍ରଜସୁନ୍ଦର

ପଟ୍ଟନାୟକଙ୍କ ସହିତ ନେଇଥିଲେ। ଏହି ସଭାରେ ଏକ ଉତ୍କଳ ମହିଳା ନିକେତନ ସ୍ଥାପନ କରିବା ପାଇଁ ସ୍ଥିର ହୋଇଥିଲା। ଉକ୍ତ ଅନୁଷ୍ଠାନର ଉଦ୍ଦେଶ୍ୟ, କାର୍ଯ୍ୟକ୍ରମ, ଧନାଗମ ପନ୍ଥା ଉଦ୍ଭାବନ ଇତ୍ୟାଦି ବିଷୟ ସ୍ଥିର କରିବା ପାଇଁ ଗଠିତ କମିଟିରେ ଜୟମଙ୍ଗଳ ରଥ ସ୍ଥାନ ପାଇଥିଲେ। (ଉତ୍କଳ ଦୀପିକା, ମେ ୨, ୧୯୩୧)

ଜୁଲାଇ ୧୫ ତାରିଖ ୧୯୩୧ରେ ଗୋପବଂଧୁ ଦାସଙ୍କ ଶ୍ରାଦ୍ଧ ଉପଲକ୍ଷେ ଉତ୍କଳ ସାଧନାଶ୍ରମଠାରେ ହୋଇଥିବା ବିଶେଷ ଉପାସନା ବେଳେ ଆଚାର୍ଯ୍ୟ ଜୟମଙ୍ଗଳ ରଥ ଏକ ଚମତ୍କାର ଉପଦେଶ ଦେଇଥିଲେ। ସେ କହିଥିଲେ - ପଣ୍ଡିତ ଗୋପବଂଧୁ ମହାତ୍ମାଗାନ୍ଧିଙ୍କ ପରି ସତ୍ୟଧର୍ମର ସାଧକ। ଦେଶର ବର୍ତ୍ତମାନ ଅବସ୍ଥାରେ ରାଜନୀତିକୁ ତାଙ୍କ ସାଧନାର ଏକ ଉପାୟ ସ୍ୱରୂପ ଗ୍ରହଣ କରିଥିଲେ। ମାତ୍ର ମନେ ଅଛି ତାଙ୍କ ମୃତ୍ୟୁର କିଛିକାଳ ପୂର୍ବେ ମୋତେ ପୁରୀ ସମୁଦ୍ରତୀରରେ ବସାଇ ତାଙ୍କ ନିଗାଢ଼ ସାଧନାର କଥା କେତେ କହିଥିଲେ। ସେଥିରୁ ତାଙ୍କୁ ରାଜନୈତିକ ମନୁଷ୍ୟ ବୋଲି କେବେ କହିପାରିବ ନାହିଁ। ମହାତ୍ମାଙ୍କ ସ୍ପର୍ଶରେ ଜଟିଳ ରାଜନୀତି ସୁବର୍ଣ୍ଣରେ ପରିଣତ ହେଲା। ସେ ରାଜନୀତି ଉତ୍କଳକୁ ଆଣି ଓଡ଼ିଆଙ୍କ ଦୃଷ୍ଟି ପ୍ରଶସ୍ତ କରାଇଅଛନ୍ତି ସ୍ୱର୍ଗୀୟ ଗୋପବଂଧୁ। ପୁରୀ କଂଗ୍ରେସ ଅଭ୍ୟର୍ଥନା ଭାଷଣରେ ଭାରତବାସୀଙ୍କୁ ସେ ଶୁଣାଇଥାଆନ୍ତେ ବଡ ଦେଉଳରେ ସ୍ଥାପିତ ପ୍ରତିକର ନିଗୁଢ଼ ତତ୍ତ୍ୱ। ମାତ୍ର କାଳ ତାହା କରାଇ ଦେଲା ନାହିଁ। ସେ ଯାହା ହେଉ, ଭାରତବାସୀ ଗୋପବଂଧୁ ନଗରରେ ମିଳିତ ହୋଇ ଦେଖିବେ ଉତ୍କଳରେ ବର୍ତ୍ତମାନ ଗୋପବଂଧୁ ଯୁଗ ରାଜତ୍ୱ କରୁଛି। ବାସ୍ତବିକ ଉତ୍କଳର ଏହି ଯୁଗକୁ ଗୋପବଂଧୁ ଯୁଗ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ। ଦେଶବାସୀ ତାଙ୍କ ସ୍ମୃତିରକ୍ଷା ନ କରନ୍ତୁ ଚିନ୍ତା ନାହିଁ। ସେ ଆପଣା ସ୍ମୃତି ଆପେ ଗଢ଼ି ଯାଇଅଛନ୍ତି। ମହାତ୍ମାମାନେ ତାହା ହିଁ କରିଥାନ୍ତି।

୧୯୩୧ରେ ଜୟମଙ୍ଗଳଙ୍କ ପ୍ରଚେଷ୍ଟାରେ ପତିତପାବନ ମିଶନର ଦୁଇଟି ବୈଠକ ହୋଇଥିଲା । ଗଂଜାମ ଜିଲାର ଉଦ୍ୟାନ ଖଣ୍ଡ, ମହୁରି ଖଣ୍ଡ, ଇଚ୍ଛାପୁର, ଖଲିକୋଟ-ଆଠଗଡ଼ ଓ ଘୁମୁସର ତାଲୁକାମାନଙ୍କରେ ପ୍ରଚାର ହୋଇଥିଲା । ରଥଙ୍କ ସହିତ ପ୍ରଚାର କାର୍ଯ୍ୟରେ ଯୋଗ ଦେଇଥିଲେ ଚନ୍ଦ୍ରମଣି ଦେବୀ, ସ୍ୱାମୀ ଧର୍ମାନନ୍ଦ, ବାଳକୃଷ୍ଣ ରାଓ, ପୁରୁଷୋତ୍ତମ ବେହେରା, ଅନ୍ତର୍ଯ୍ୟାମୀ ବେହେରା ଏବଂ କୁମୁଦିନୀ ଦେବୀ । ପ୍ରାୟ ୫୦ ଖଣ୍ଡ ଗ୍ରାମ ସେମାନେ ପରିଦର୍ଶନ କରିଥିଲେ । ମାଣ୍ଡାପଲ୍ଲୀଠାରେ ଏକ ପଲ୍ଲୀ ସମ୍ମିଳନୀ ହୋଇଥିଲା ଏବଂ ନୂଆଗାଁରେ ଏକ ପ୍ରାର୍ଥନା ସମାଜ ସ୍ଥାପିତ ହୋଇଥିଲା । ମାଣିକାପୁର ଉତ୍କଳ ପାଠାଗାର ସହିତ "ନିଖିଳ ଉଦ୍ୟାନ ଓଡ଼ିଆ ସଂଘ" ସ୍ଥାପନର ପ୍ରସ୍ତାବ ମଧ୍ୟ ତାଙ୍କ ଦ୍ୱାରା ହୋଇଥିଲା । (ଆଶା, ୩ ଅଗଷ୍ଟ, ୧୯୩୧)

୧୯୩୧ ମସିହା ଜୁଲାଇ ୨୬ ତାରିଖରେ ନିଖିଳ ଉତ୍କଳ ସମାଜ ସଂସ୍କାର ସମ୍ମିଳନୀ କଟକଠାରେ ହୋଇଥିଲା । ଏଥିରେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ସଭାପତିତ୍ୱ କରିଥିଲେ । ଏହି ସଭାରେ ଏକ ପ୍ରସ୍ତାବାନୁସାରେ ଉତ୍କଳ ସମାଜ ସଂସ୍କାର ସଂଘ ନାମକ ଏକ ଅନୁଷ୍ଠାନ ଗଠନ କରାଯିବାର ବ୍ୟବସ୍ଥା ହୋଇଥିଲା । ଏହାର ଏକ କାର୍ଯ୍ୟକାରୀ କମିଟି ଗଠିତ ହୋଇଥିଲା । ଏଥିରେ ଲକ୍ଷ୍ମୀ ନାରାୟଣ ସାହୁ, କିଶୋରୀ ମୋହନ ଜୋଆରଦାର, ଲକ୍ଷ୍ମୀନାରାୟଣ ପଟ୍ଟନାୟକ; ହରିହର ମହାପାତ୍ର, ମହେଶ ଚନ୍ଦ୍ର ଭୂୟାଁ, ଶରତ ଚନ୍ଦ୍ର ମୁଖର୍ଜୀ, ମାଳତୀ ଦେବୀ, ବୈରାଗୀ ଚରଣ ମିଶ୍ର, ହରିଶ୍ଚନ୍ଦ୍ର ରାୟ, ସତ୍ୟ ନାରାୟଣ ସେନ୍‌ଗୁପ୍ତ, ହଜାରୀ ବେହେରା, ଜାହ୍ନବୀ ଦେବୀ, ଶାନ୍ତି ଦେବୀ ଓ ଶ୍ରୀବତ୍ସ ପଣ୍ଡା ସଦସ୍ୟଥିଲେ । ଜୟମଙ୍ଗଳ ମଧ୍ୟ ଏହି କମିଟିରେ ସ୍ଥାନ ପାଇଥିଲେ । (ଉତ୍କଳ ଦୀପିକା, ଅଗଷ୍ଟ ୧, ୧୯୩୧)

୧୯୩୨ ମସିହାକୁ ଜୟମଙ୍ଗଳଙ୍କ ସଂସ୍କାର ଅଭିଯାନ ଦ୍ରୁତଗତିରେ ଆଗେଇ ଯାଇଥିଲା । ନିଖିଳ ଉତ୍କଳ ସଂସ୍କାରକ ସମ୍ମିଳନୀର ଦ୍ୱିତୀୟ

ଅଧିବେଶନ ଏବଂ ସାଧାରଣ ପରିଷଦର ବାର୍ଷିକ ଅଧିବେଶନ ନିର୍ଦ୍ଧାରଣମାନଙ୍କ ନିର୍ଦ୍ଦେଶ ମତେ ୧୯୩୨ରେ କାର୍ଯ୍ୟ କରିବା ପାଇଁ ଶାରଦା ଆଇନ କାର୍ଯ୍ୟକାରୀ ସଭା, ବିଧବା ବିବାହ ସହାୟକ ସଭା, ଅସ୍ପୃଶ୍ୟତା ନିବାରଣ ସଭା ଏବଂ ପଲ୍ଲୀ ସଂସ୍କାର ସଭା ଏହିପରି ଚାରିଗୋଟି ସବ୍‌କମିଟି ଗଢ଼ା ଯାଇଥିଲା। ଏହି ସବ୍ କମିଟିମାନଙ୍କରେ ଯଥାକ୍ରମେ ଭୀମଚରଣ ଚୌଧୁରୀ, ବୈରାଗୀ ଚରଣ ମିଶ୍ର, ହଜାରୀ ବେହେରା ଏବଂ ବୃନ୍ଦାବନ ମିଶ୍ରଙ୍କୁ ସଂପାଦକ ନିର୍ବାଚନ କରାଗଲା। ଜୟମଙ୍ଗଳ ରଥ ସବ୍‌କମିଟି ମାନଙ୍କରେ ସଭାପତି ରହିବାକୁ ସ୍ଥିର ହୋଇଥିଲା। ଉତ୍କଳ ପତିତପାବନ ସଂଘର ସଭାପତି ହେଲେ ଶ୍ରୀବତ୍ସ ପଣ୍ଡା ଏବଂ ଜୟମଙ୍ଗଳ ରଥ ସାଧାରଣ ସଂପାଦକ ଓ କୋଷାଧ୍ୟକ୍ଷ ରୂପେ ନିର୍ବାଚିତ ହୋଇଥିଲେ। (ଉତ୍କଳ ଦୀପିକା, ମାର୍ଚ୍ଚ ୨୬, ୧୯୩୨)

୧୯୩୩ରେ ସୁରଳାର ଉତ୍କଳ ସଂସ୍କାର ଆଶ୍ରମ କୁସଂସ୍କାର ଦୂର କରିବା ପାଇଁ ବେଶ୍ ଉଦ୍ୟମ କରିଥିଲା ଏବଂ ଏଥିରେ ଜୟମଙ୍ଗଳ ରଥ ପୂର୍ଣ୍ଣ ସହଯୋଗ କରିଥିଲେ। ହରିବଂଶ ପୁରାଣ ପଢ଼ିଲେ ବଂଶକ୍ଷୟ ହୁଏ - ଏହିପରି ଏକ ଭ୍ରାନ୍ତ ଧାରଣା ଏ ଅଞ୍ଚଳରେ କୈବର୍ତ୍ତମାନଙ୍କ ମଧ୍ୟରେ ରହିଥିଲା। ସେଥିପାଇଁ ଏ ଅଞ୍ଚଳରେ ପୁରାଣ ପାଠ ହେଉ ନଥିଲା। କିନ୍ତୁ ସୁରଳା ଉତ୍କଳ ସଂସ୍କାର ଆଶ୍ରମର ଶ୍ୟାମଘନ ବେହେରା ହରିବଂଶ ପଢ଼ା ଆରମ୍ଭ କଲେ। ଅନ୍ଧବିଶ୍ୱାସୀ କୈବର୍ତ୍ତମାନେ ସେଥିରେ ଆଗ୍ରହ ପ୍ରକାଶ କଲେ ନାହିଁ। ବରଂ ଆଶ୍ରମ ପ୍ରତି ଓ ପୁରାଣ ପଣ୍ଡାଙ୍କ ପ୍ରତି ନାନା ପ୍ରକାର ଭୟ ଦେଖାଇବାକୁ ଲାଗିଲେ। କିନ୍ତୁ ପୁରାଣ ଖଣ୍ଡିକ ପରେ ଖଣ୍ଡେ ଶେଷ ହୋଇ ପଢ଼ାର ଯେପରି ଧୁମ ଚାଲିଲା ଜଣେ ଜଣେ ହୋଇ ଅନେକ ସେ ମଣ୍ଡଳୀରେ ଯୋଗ ଦେବାକୁ ଲାଗିଲେ। ପୁରାଣ ପାଠ ଉତ୍ସବରେ ଜୟମଙ୍ଗଳ ରଥ ଉପାସନା କରି ଛୋଟ ବଡ଼ ସବୁପ୍ରକାର କୁସଂସ୍କାର ବିରୁଦ୍ଧରେ ସଂଗ୍ରାମ

କରିବା ଲାଗି ଉପଦେଶ ଦେଇଥିଲେ। (ଆଶା, ୨୦ ଫେବୃଆରୀ ୧୯୩୩) ୧୯୩୩ ମସିହାରେ ଗଂଜାମ ଜିଲା ହରିଜନ ସେବକ ସମାଜର ସଂପାଦକ ହିସାବରେ ଜୟମଙ୍ଗଳ ରଥ, ସହକାରୀ ସଂପାଦକ ବାଂଛାନିଧି ପଟ୍ଟନାୟକ, ପର୍ଶୁରାମ ମହାନ୍ତି ପ୍ରଭୃତିଙ୍କ ସହଯୋଗରେ ବ୍ରହ୍ମପୁରର ହାଡ଼ି ସାହିମାନଙ୍କରେ ସାହି ଓ ଘର ପରିଷ୍କାର ରଖିବା ବିଷୟରେ ବୁଝାଇଥିଲେ। ପ୍ରତି ସୋମବାର ଦିନ ରଥ ଉପସ୍ଥିତ ରହି ସାହିର ବୟସ୍କ ଲୋକମାନଙ୍କୁ ଧର୍ମ ଓ ନୀତିଶିକ୍ଷା ପ୍ରଦାନ କରୁଥିଲେ। (ଆଶା, ୨୧ ଅଗଷ୍ଟ ୧୯୩୩) ବଡ଼ ହାଡ଼ି ସାହିର ଲୋକେ ତାଙ୍କ ସାହିର ନିୟମ ଲଂଘନ କରି ତାସ୍‌ଖେଳ ଆରମ୍ଭ କରୁଥିଲେ। ଦିନକୁ କିଏ ଦଶ ଅଣା କିଏ ଆଠ ଅଣା ହାରି ସର୍ବସ୍ୱାନ୍ତ ହେଉଥିଲେ। ସେମାନଙ୍କର କୂଳସଭାରେ ଜୟମଙ୍ଗଳ ରଥ ଓ ବାଂଛାନିଧି ପଟ୍ଟନାୟକ ଉପସ୍ଥିତ ହୋଇ ପ୍ରଚାର କରିବା ଫଳରେ ଖେଳ ବନ୍ଦ କରିବା ସ୍ଥିର ହୋଇଥିଲା।

ବ୍ରହ୍ମପୁର ପତିତପାବନ ମିଶନର ସଭାପତି ହିସାବରେ ଜୟମଙ୍ଗଳ ୧୯୩୪ରେ ଶାରଦା ଆଇନ ପ୍ରତି ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ। ଯେଉଁ ବାଲ୍ୟବିବାହ ରୂପକ କୁସଂସ୍କାର ସମାଜରୁ ଦୂର କରିବା ନିମନ୍ତେ ଦେଶର ଚିନ୍ତାଶୀଳ ଓ ଶିକ୍ଷିତ ବ୍ୟକ୍ତିମାନେ ବହୁକାଳ ଧରି ଆନ୍ଦୋଳନ ଚଳାଇ ଆସିଥିଲେ ତାହାର ବିରୋଧ ନିମନ୍ତେ ହରବିଳାସ ଶାରଦାଙ୍କ ଆଇନ ପ୍ରଣିତ ହୋଇଥିଲା। ଏହି ଶାରଦା ଆଇନ କାର୍ଯ୍ୟକାରୀ କରିବା ପାଇଁ ୧୯୩୪ରେ ଭାରତବର୍ଷରେ ପ୍ରବଳ ଉଦ୍ୟମ ହୋଇଥିଲା। ଓଡ଼ିଶାରେ ପଣ୍ଡିତ ନୀଳକଣ୍ଠ ଦାସ ଓ ଜୟମଙ୍ଗଳ ରଥ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ୧୯୩୪ରେ ସକ୍ରିୟ ହୋଇଥିଲେ। ଜୟମଙ୍ଗଳ ରଥଙ୍କର ପତିତପାବନ ମିଶନ୍ ଶାରଦା ଆଇନ କାର୍ଯ୍ୟକାରୀ କମିଟି ୧୯୩୪ରେ ଗଠନ କରିଥିଲା। କିନ୍ତୁ ତାହାର ଏପରି କୌଣସି କ୍ଷମତା ନଥିଲା ଯେ

କୌଣସି ସଭ୍ୟ ବିବାହ ସ୍ଥାନକୁ ଯାଇ ଆଇନ ବଳରେ ବାଲ୍ୟବିବାହ ବନ୍ଦ କରିଦେଇ ପାରିବେ। କଥାଦ୍ୱାରା ଓ ପତ୍ରଦ୍ୱାରା ୧୯୩୪ ଜାନୁଆରୀରେ ସାବଧାନ କରାଇବା ଦାୟିତ୍ୱ କମିଟି ଗ୍ରହଣ କରିଥିଲା। ସାବଧାନ କରାଇବା ସତ୍ତ୍ୱେ ଯେଉଁଠାରେ ବାଲ୍ୟବିବାହ ଅନୁଷ୍ଠିତ ହେଉଥିଲା ସେଠାରୁ ଉପଯୁକ୍ତ ସାକ୍ଷ୍ୟ ପ୍ରମାଣାଦି ପାଇଲେ ମକଦ୍ଦମା ଚଳାଇବା କାର୍ଯ୍ୟ ମଧ୍ୟ କମିଟି ହାତରେ ଥିଲା। ଦେଶର ଚିନ୍ତାଶୀଳ ଓ ଶିକ୍ଷିତ ବ୍ୟକ୍ତିମାନେ ସହାୟ ନ ହେଲେ କମିଟି କିଛି କରିପାରିବ ନାହିଁ ବୋଲି ଜୟମଙ୍ଗଳ ସେତେବେଳେ ଚିନ୍ତା କରିଥିଲେ। ରଥ ଏହି ସଂପର୍କରେ ଏକ ସୁଚିନ୍ତିତ ମତ ଆଶା, ଫେବୃଆରୀ ୧୯, ୧୯୩୪ରେ ଉପସ୍ଥାପିତ କରି ଲେଖିଥିଲେ - ବିବାହ ଏକ ପବିତ୍ର ବିଧାନ। ତାହା ଯେତିକି ପ୍ରାକାଶ୍ୟ ଭାବରେ କରାଯାଏ ତାହାର ପବିତ୍ରତା ସେତିକି ବଢ଼େ। ଗୋପନୀୟ ଭାବରେ ଯାହା ହୁଏ ତାହା ବିବାହ ନୁହେଁ, ବ୍ୟଭିଚାର। ଗୋପନୀୟ ଭାବରେ ଚଳିଥିବା ବିବାହରେ ଅନିଷ୍ଟ ଅଛି। ଶୁଣାଯାଏ କୌଣସି ସ୍ଥାନରେ ଶାରଦା ଆଇନ ଭୟରେ ଅତି ଗୁପ୍ତ ଭାବରେ ଗୋଟିଏ ବାଲ୍ୟ ବିବାହ ଅନୁଷ୍ଠିତ ହୋଇଥିଲା। ସେହି ବିବାହର ବର କିଛି ଯୌତୁକ ପାଇ ପରେ ଅନ୍ୟ ସ୍ଥାନରେ ବିବାହ କରିଅଛି। ଗୁପ୍ତରେ ପ୍ରଥମ ବିବାହ ଅନୁଷ୍ଠିତ ହୋଇଥିବା ଯୋଗୁଁ କନ୍ୟାପିତା ବର ଉପରେ ଦାବି କରିପାରୁ ନାହିଁ, କିମ୍ବା କନ୍ୟାକୁ ଅନ୍ୟ ବରରେ ଦେଇ ପାରୁନାହିଁ। ବିବାହ ନାମରେ ବ୍ୟଭିଚାର କଲେ ଧର୍ମହାନି ହୁଏ ଏବଂ ବହୁ ଅନିଷ୍ଟ ଘଟେ। ଏକଥା ଦେଶବାସୀ ହୃଦୟଙ୍ଗମ କରି ଗୁପ୍ତ ବିବାହ ଛାଡ଼ନ୍ତୁ। ଯଦି ବାଲ୍ୟବିବାହରେ ପ୍ରକୃତ ବିଶ୍ୱାସ ଅଛି ତେବେ ସକଳ ବାଧା ବିଘ୍ନକୁ ବରଣ କରି ତାହା ପ୍ରକାଶ ଭାବେ କରନ୍ତୁ। ଯାହାର ବିଶ୍ୱାସ ନାହିଁ ସେ ନିର୍ଭୟରେ ଯୁବତୀ ବିବାହ କରିଯାଆନ୍ତୁ। ଶାରଦା ଆଇନ ପ୍ରବଳ ଥିବା ବେଳେ ସମାଜ କିଛି କରିପାରିବ ନାହିଁ। ଚିନ୍ତାଶୀଳ ଶିକ୍ଷିତ ବ୍ୟକ୍ତିମାନଙ୍କର ଏତିକିବେଳେ

ଭୀତ ହୋଇ ପଛରେ ପଡ଼ି ରହିବା ଉଚିତ ନୁହେଁ। ଅଗ୍ରସର ହୋଇ ଶାରଦା ଆଇନ ଘେନି କାର୍ଯ୍ୟ କରିବାକୁ ହେବ। ଓକୀଲମାନଙ୍କୁ ଏଥିସକାଶେ ମହାତ୍ମାଗାନ୍ଧି ଆହ୍ୱାନ କରିଥିଲେ। ବାଲ୍ୟବିବାହ ନାରୀଜାତିର ଶିକ୍ଷା ସ୍ୱାଧୀନତା ପଥରେ ଘୋର କଣ୍ଟକ ଏବଂ ବାଲ୍ୟବିବାହ ଯୋଗୁଁ ଦେଶରେ ଦୀନହୀନ ଦୁର୍ବଳ ସନ୍ତାନମାନଙ୍କର ଜନ୍ମ। ଜୀବନର ଆଲୋକ ଲାଭ କରିବାକୁ ହେଲେ, ଦେଶକୁ ଦାସତ୍ୱ ବନ୍ଧନରୁ ମୁକ୍ତ କରିବାକୁ ହେଲେ ବାଲ୍ୟବିବାହକୁ ଅସ୍ୱୀକାର କର। ବରଂ ଅବିବାହିତ ରହ। କିନ୍ତୁ ଶାରଦା ଆଇନ ଘେନି କାର୍ଯ୍ୟ କର। ଶାରଦା ଆଇନ ଯଦି ଉଠିଯାଏ, ମନେରଖ ଜଗତ ଆଗରେ ଭାରତ ଆଉ ମୁଣ୍ଡଟେକି ଠିଆ ହୋଇପାରିବ ନାହିଁ।

୧୯୩୪ ମସିହାରେ ଜୟମଙ୍ଗଳ ବିଭିନ୍ନ ଗଠନାତ୍ମକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ। ୧୯୩୪, ୧୯ ମାର୍ଚ୍ଚରେ ଜୋବରା (କଟକ) ନିକଟରେ ସ୍ଥାନୀୟ ଗୋପୀନାଥ ମନ୍ଦିରଠାରେ ଏକ ବହିରଙ୍ଗ ସଭାରେ ରଥ ମାନବ ଜୀବନର ଗତି ସମ୍ବନ୍ଧରେ ଏକ ବକ୍ତୃତା କରିଥିଲେ। ଉକ୍ତ ସଭାରେ ନାନା ଜାତିର ବହୁବ୍ୟକ୍ତି ଉପସ୍ଥିତ ଥିଲେ ଏବଂ ସଭାରେ ଭାଗବତ ଟୁଙ୍ଗି ସ୍ଥାନରେ ପତିତପାବନ ବିଦ୍ୟାଳୟ ସଂଲଗ୍ନ କରି ଏକ ପାଠାଗାର ସ୍ଥାପନ କରାଯିବାର ସ୍ଥିର ହୋଇଥିଲା। ସେ ମଧ୍ୟ ୨୦ ତାରିଖ ଦିନ ସମୂହ ଉପାସନାରେ ଉପାସନାର ତତ୍ତ୍ୱ ସମ୍ବନ୍ଧରେ ଉପଦେଶ ଦେଇଥିଲେ। (ଆଶା, ମାର୍ଚ୍ଚ ୨୬, ୧୯୩୪) ୧୯୩୪ ମସିହା ମାର୍ଚ୍ଚ ୨୦ ତାରିଖରେ ନିଖିଳ ଉତ୍କଳ କବି ସମ୍ମିଳନୀର ଅଭ୍ୟର୍ଥନା ସଭା ଧରାକୋଟ ରାଜସାହେବଙ୍କ ବଙ୍ଗଳାରେ ବସିଥିଲା। ଏହି ସଭାରେ ଜୟମଙ୍ଗଳ ଅସ୍ପୃଶ୍ୟତା ନିବାରଣ ପ୍ରବନ୍ଧ ପାଇଁ ପାଞ୍ଚଟଙ୍କା ପୁରସ୍କାର ଘୋଷଣା କରିଥିଲେ। (ତତ୍ରୈବ) ସେତେବେଳେ ରଥ ମଧ୍ୟ ଗଂଜାମ ଜିଲା ଉତ୍କଳ ହରିଜନ ସେବକ ସଂଘର ସଂପାଦକ ଥିଲେ। ସେ ଏପ୍ରିଲ ୨୯, ୧୯୩୪ରେ ଗୋପାଳପୁରରେ ପହଞ୍ଚି

ସ୍ଥାନୀୟ ହରିଜନ ସାହି ପରିଦର୍ଶନ କରିଥିଲେ। ନିଶା ନିବାରଣ, ଶିକ୍ଷା ଓ ପରିଷ୍କୃତି ସମ୍ବନ୍ଧେ ସେ ହରିଜନମାନଙ୍କୁ ବୁଝାଇଥିଲେ। ସେଠାରେ ସଂଘର ଏକ କେନ୍ଦ୍ର ଖୋଲିବାକୁ ହରିଜନମାନେ ପ୍ରାର୍ଥନା କରିଥିଲେ। ବାଳକବାଳିକାମାନଙ୍କୁ ବୋର୍ଡ଼ ସ୍କୁଲକୁ ପଠାଇବା ପାଇଁ ସେମାନଙ୍କୁ ଉପଦେଶ ଦିଆଯାଇଥିଲା। (ଏପ୍ରିଲ ୩୦, ୧୯୩୪, ଆଶା)

ଅସ୍ପୃଶ୍ୟତା ନିବାରଣ ସଂପର୍କରେ ତାଙ୍କର ମତ ଓ ମନ୍ତବ୍ୟ ୧୯୩୪ ଏପ୍ରିଲ ମାସରେ ସ୍ୱଷ୍ଟ ଭାବରେ ପ୍ରକାଶ ପାଇଥିଲା। ସେ କହିଥିଲେ - ଦଳେ ହିନ୍ଦୁ ଆପଣାକୁ ଜାତିଆ ମନେକରି ଆଉ ଦଳେ ହିନ୍ଦୁକୁ ଅଜାତିଆ ଅସ୍ପୃଶ୍ୟ କହୁଅଛନ୍ତି। ସେହି ଅଜାତିଆଙ୍କ ଭିତରେ ପୁଣି ଅନେକ ଜାତି ଏବଂ ଏକ ଜାତିର ଲୋକ ଅନ୍ୟ ଜାତିକୁ ଛୁଉଁ ନାହିଁ। ଯେ ଅସ୍ପୃଶ୍ୟତା ରକ୍ଷା କରିଛି ସେ ଉଚ୍ଚଜାତି। ଏହି ଭ୍ରାନ୍ତଧାରଣା ହିନ୍ଦୁଙ୍କ ମଧ୍ୟରେ ବଦ୍ଧମୂଳ ହୋଇ ରହିଅଛି। ଏ କୁସଂସ୍କାର ବିରୁଦ୍ଧରେ ଯୁଦ୍ଧ କରିନାହିଁ। ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନର ପ୍ରଧାନ ଉଦ୍ଦେଶ୍ୟ। ଜାତୀୟ କଂଗ୍ରେସ କର୍ମଶୀଳ ହେବା ଦିନରୁ ଅସ୍ପୃଶ୍ୟତା ନିବାରଣ ତାହାର ଏକ ପ୍ରଧାନ କାର୍ଯ୍ୟ ରୂପେ ପରିଗଣିତ ହୋଇଅଛି। ଏହା ହିନ୍ଦୁ ମହାସଭାର ମଧ ପ୍ରଧାନ କାର୍ଯ୍ୟ ବୋଲି କୁହାଯାଉଅଛି। ଏଥିପ୍ରତି ସମଗ୍ର ହିନ୍ଦୁଜାତି ତଥା ଭାରତୀୟ ଜାତିର ଦୃଷ୍ଟି ଆକର୍ଷଣ କରିଛନ୍ତି। ବ୍ରାହ୍ମ ସମାଜ ଓ ଆର୍ଯ୍ୟ ସମାଜ, ଖ୍ରୀଷ୍ଟାନ୍ ସମାଜ ସହ ତଥାକଥିତ ଅସ୍ପୃଶ୍ୟଙ୍କ ଭିତରେ ପଶି କାର୍ଯ୍ୟ କରି ନଥିଲେ ବୋଧହୁଏ ହିନ୍ଦୁ ତଥା ଭାରତୀୟର ଚେତନା ଏତେ ଶୀଘ୍ର ଜାଗ୍ରତ ହୋଇପାରି ନଥାନ୍ତା। ଅସ୍ପୃଶ୍ୟତା ନିବାରଣ ସମ୍ବନ୍ଧେ ଗୋଟାଏ ଚେତନା ଆସିଛି ସତ, କିନ୍ତୁ ସେଥିପାଇଁ ଏ ପର୍ଯ୍ୟନ୍ତ ସେପରି କୌଣସି ତୁମୂଳ ଆନ୍ଦୋଳନ ହୋଇନାହିଁ। ଖଦୀ ପରି ଅସ୍ପୃଶ୍ୟତା ନିବାରଣ କଂଗ୍ରେସର ପ୍ରଧାନ ନୀତି ହୋଇ ସୁଦ୍ଧା ଏପରି ଅନେକ ଖଦଡ଼ ପରିହିତ କଂଗ୍ରେସ କର୍ମୀଙ୍କୁ

ଆମ୍ଭେମାନେ ଦେଖୁଛୁ ଯେଉଁମାନେ ଅସ୍ପୃଶ୍ୟତା ତ୍ୟାଗ କରିନାହାନ୍ତି। ଆଜି ମଧ୍ୟ କଂଗ୍ରେସ ଉପଦେଷ୍ଟା ମହାତ୍ମାଗାନ୍ଧି ହରିଜନ ଆନ୍ଦୋଳନ ଆରମ୍ଭ କରିଥିବାଠାରେ କଂଗ୍ରେସ ନେତାମାନେ ତହିଁରେ ଯୋଗ ନଦେଇ ନୀରବ ରହିଛନ୍ତି। ଆମ୍ଭମାନଙ୍କର ଏହି ଉତ୍କଳ ପ୍ରଦେଶର କଥା ଦେଖନ୍ତୁ। ପ୍ରାୟ ସବୁ କଂଗ୍ରେସ ନେତା ଓ କଂଗ୍ରେସ କର୍ମୀ ଜେଲ୍ ବାହାରେ ଅଛନ୍ତି। ଅଥଚ ଏହି ଯେ କଂଗ୍ରେସର ଏକ ପ୍ରଧାନ କାର୍ଯ୍ୟ ହରିଜନ ଆନ୍ଦୋଳନ ନାମରେ ଚାଲିଛି ତହିଁରେ କେହି ପ୍ରାୟ ବାହାରୁ ନାହାନ୍ତି। ଜେଲକୁ ଯିବା ସକାଶେ ଅନ୍ୟ କୌଣସି ଏକ ଆନ୍ଦୋଳନର ପ୍ରତିକ୍ଷା କରି ସେମାନେ ବସିଛନ୍ତି ଭଲ କଥା। କିନ୍ତୁ ସେପରି ଆନ୍ଦୋଳନ ଆସିବା ଯାଏ ହରିଜନ ଆନ୍ଦୋଳନରେ ଯୋଗ ଦଅନ୍ତି ନାହିଁ କାହିଁକି ? କେତେକଙ୍କ ମୁହଁରୁ ମୁଁ ଶୁଣିଛି ଯେ ଯେଉଁଠାରେ ସଂଘର୍ଷ ସଂଗ୍ରାମ ନାହିଁ ସେଠାରେ କଂଗ୍ରେସ କର୍ମୀ ଏପରି ଧୀରସ୍ଥିର ଭାବରେ କାର୍ଯ୍ୟ କରିବାକୁ ଚାହେଁ ନାହିଁ। କିନ୍ତୁ ମୁଁ କହେ ଏହି ହରିଜନ ଆନ୍ଦୋଳନକୁ ଠିକ୍ ଭାବରେ ଚଳାଇ ପାରିଲେ ଏଠାରେ ଯେ ସଂଘର୍ଷ ସଂଗ୍ରାମ ଉପସ୍ଥିତ ହେବ ତହିଁରେ କର୍ମୀର ଅଶେଷ ତ୍ୟାଗ ଓ କଷ୍ଟ ସହିଷ୍ଣୁତା ପ୍ରଦର୍ଶିତ ହେବା ସକାଶେ ବିସ୍ତୃତ କ୍ଷେତ୍ର ରହିଛି। ଆଇନ ଅମାନ୍ୟ ଓ ବିଦେଶୀ ବହିଷ୍କାର ଇତ୍ୟାଦି ଆନ୍ଦୋଳନରେ ଯେପରି କେତେକଙ୍କର ଅପ୍ରିୟ ହେବାକୁ ପଡ଼ିଥାଏ ଏହି ହରିଜନ ଆନ୍ଦୋଳନରେ ତା ଅପେକ୍ଷା କିଛି ଅଧିକ ଲୋକଙ୍କର ଅପ୍ରିୟ ହେବାକୁ ପଡ଼ିବ, ଏଥିରେ ଭୟ କଣ ? ବହୁ ଜନପ୍ରିୟତା ଓ ପ୍ରଶଂସା ପ୍ରତି ଭୃକ୍ଷେପ ନକରି କର୍ମୀଶ୍ରେୟ ଯାହା ତାହା ସାଧନ କରିବା ପାଇଁ ଅଗ୍ରସର ହେବା ଆବଶ୍ୟକ। ଲୋକମତ ଶିକ୍ଷିତ କରିବା ନିମନ୍ତେ ପୁର ପଲ୍ଲୀରେ ପ୍ରବଳ ପ୍ରଚାର କରିବାକୁ ହେବ। ହରିଜନ ଆନ୍ଦୋଳନର କର୍ମୀମାନେ ଆଜିକାଲି କେବଳ ହରିଜନ ପଡାକୁ ଯାଇ ପ୍ରଚାର କରୁଛନ୍ତି। ସେଠାରେ ଅସ୍ପୃଶ୍ୟତା

ଅଛି ଏବଂ ପ୍ରଚାରର ଆବଶ୍ୟକତା ରହିଛି ସ୍ୱୀକାର କରୁଛୁଁ । କିନ୍ତୁ ଅସ୍ପୃଶ୍ୟତାର ମୂଳ ସେଠାରେ ନାହିଁ । ହରିଜନମାନେ ଜାତିଆ ହିନ୍ଦୁଙ୍କଠାରୁ ଏ ଅସ୍ପୃଶ୍ୟତା କଥା ଅନୁକରଣ କରିଛନ୍ତି । ଜାତିଆ ହିନ୍ଦୁଙ୍କ ମନୋଭାବ ପ୍ରଥମେ ପରିବର୍ତ୍ତିତ ହେବା ଆବଶ୍ୟକ । ହରିଜନଙ୍କ ମଧ୍ୟରେ ପ୍ରଚାର କରିବା ଯେପରି ସହଜସାଧ ଜାତିଆ ହିନ୍ଦୁଙ୍କ ଭିତରେ ପ୍ରଚାର ସେପରି ସହଜସାଧ ନୁହେଁ । ହରିଜନ ପଡ଼ାରେ କର୍ମୀର ଆଦର ଅଭ୍ୟର୍ଥନା ଅଛି । କିନ୍ତୁ ଜାତିଆ ହିନ୍ଦୁଙ୍କଠାରୁ ଯେ ପ୍ରହାର ପର୍ଯ୍ୟନ୍ତ ପାଇବା ସମ୍ଭାବନା ରହିଛି । ହରିଜନ ଶିକ୍ଷା ସଭ୍ୟତା ଧନମାନଠାରୁ ଦୂରରେ ରହିଥିବାରୁ ତାହାର ଦୀନତା ଅଛି ଏବଂ ସଦୁପଦେଶ ପାଇଁ ଉତ୍କଣ୍ଠିତ ରହିଥାଏ । ବିଶେଷତଃ ଅସ୍ପୃଶ୍ୟତା ନିବାରଣ ମହାବାର୍ତ୍ତା ତା ପକ୍ଷେ ମୃତ ସଂଜୀବନୀ ପରି । ସେ ବାର୍ତ୍ତା ଆଦରରେ ଗ୍ରହଣ କରିବ । କିନ୍ତୁ ଶିକ୍ଷା ସଭ୍ୟତା ପ୍ରାପ୍ତ ଜାତିଆ ହିନ୍ଦୁ ଅହଂକାରରେ ମତ୍ତ । ତାହାର କୁସଂସ୍କାର ଅଛି ବୋଲି କହିଲେ ସେ ତାହା ସହଜରେ ସ୍ୱୀକାର କରିବ ନାହିଁ । ପ୍ରଚାର ଏଠାରେ ବଡ଼ ପ୍ରବଳ ଓ ହୃଦୟଗ୍ରାହୀ ହେବା ଆବଶ୍ୟକ । ବାରଂବାର ପ୍ରଚାର କରି ଏହି ଜାତିଆ ହିନ୍ଦୁଙ୍କ ମନୋଭାବ ବଦଳେଇ ଦେଇ ପାରିଲେ ହରିଜନଙ୍କ ମନୋଭାବ ଆପେ ବଦଳିଯିବ । ଉତ୍କଳ ପ୍ରଦେଶରେ ଏ ପର୍ଯ୍ୟନ୍ତ ଏ ଦିଗରେ କାର୍ଯ୍ୟ କରା ହୋଇନାହିଁ । ଏହି ପ୍ରଚାର ସକାଶେ ଧନଜନର ଅଭାବ ରହିଛି ସତ । କିନ୍ତୁ ହରିଜନ ସେବକ ସଂଘ ହାତରେ ଥିବା ପ୍ରଚାର ବିଭାଗର ବ୍ୟୟରେ ଉତ୍କଳର ନେତୃ ସ୍ଥାନୀୟ ବ୍ୟକ୍ତିମାନେ ବୁଲିଗଲେ ଉତ୍କଳରୁ ଏହି ଆନ୍ଦୋଳନ ସକାଶେ ଧନଜନ ସଂଗ୍ରହ ହୋଇଯାଇପାରିବ । ପ୍ରାଦେଶିକ କାର୍ଯ୍ୟକାରୀ କମିଟିରେ ଏ ବିଷୟ ନେଇ ଗତଥର ଏକ ନିର୍ଦ୍ଧାରଣ କରାଯାଇଅଛି । ପଣ୍ଡିତ ନୀଳକଣ୍ଠ ଦାସ, ଗୋପବଂଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ଶଶିଭୂଷଣ ରଥ ପ୍ରଭୃତି ବ୍ୟକ୍ତିମାନେ ଏକ ପ୍ରାଦେଶିକ ପ୍ରଚାର ଦଳ ଗଠନ କରିବା ନିମନ୍ତେ ପ୍ରାର୍ଥନା

କରିଛନ୍ତି। ଆଶା କରୁଁ ଜାତିର ମୁକ୍ତିପାଇଁ ସମାଜରୁ ଏହି ଅସ୍ପୃଶ୍ୟତା କଳଙ୍କ ଦୂର କରିବା ସକାଶେ ଆମ୍ଭ ଜାତୀୟ ଭାଇମାନେ କଦାପି ପଛୁଘୁଞ୍ଚା ଦେବେ ନାହିଁ।

ଜାତିଆ ହିନ୍ଦୁଙ୍କ ଭିତରେ ପ୍ରବଳ ପ୍ରଚାର ଏବଂ ହରିଜନଙ୍କ ଭିତରେ ସାମାନ୍ୟ ପ୍ରଚାର କରି ଅସ୍ପୃଶ୍ୟତା ନିବାରଣ କରାଇବା ସଂଗେ ସଂଗେ ହରିଜନ ମଙ୍ଗଳକର କାର୍ଯ୍ୟ କରାଯାଇପାରିବ। ପ୍ରଚାର ପ୍ରତି ଅବହେଳା କରି କେବଳ ମଙ୍ଗଳକର କାର୍ଯ୍ୟରେ ସମସ୍ତ ଶକ୍ତି ସମୟ ଓ ଧନ ବ୍ୟୟ କରିବା ଉଚିତ ନୁହେଁ। ହରିଜନଙ୍କ ଧର୍ମସଂକ୍ରାନ୍ତ ବିଷୟରେ ଶିକ୍ଷା ଓ ଆର୍ଥିକ ଅବସ୍ଥାର ଉନ୍ନତି ବିଷୟରେ ଯେ ଆମ୍ଭେମାନେ ବିଶେଷ ଭାବେ କାର୍ଯ୍ୟ କରୁଅଛୁଁ, ଜାତିଆ ହିନ୍ଦୁଙ୍କ ମନୋଭାବ ବଦଳିଗଲେ ସେ ସମସ୍ତ ସମସ୍ୟା ବଡ଼ ସହଜରେ ସମାହିତ ହୋଇ ଯାଇପାରିବ। ମନୋଭାବର ପରିବର୍ତ୍ତନ ନ ଆସିଲେ ଆମ୍ଭମାନଙ୍କର ସକଳ ଶ୍ରମ ପଣ୍ଡ ହେବ। ଆମ୍ଭମାନଙ୍କ ଉଦ୍ୟମ ଫଳରେ କେତେ ଦେବାଳୟ ଦ୍ୱାର ହରିଜନଙ୍କ ପାଇଁ ଖୋଲା ଯାଇଥିବା ଘୋଷଣା ମିଳିଅଛି। କେତେ ସ୍ଥାନର ପଞ୍ଚମା ବିଦ୍ୟାଳୟ ଭଂଗାଯାଇ ସେ ସ୍ଥାନରେ ଥିବା ଜାତିଆ ହିନ୍ଦୁଙ୍କ ବିଦ୍ୟାଳୟକୁ ମିଶ୍ରିତ ସ୍କୁଲ ବୋଲି କୁହାହେଉଛି। ହରିଜନଙ୍କ ଭିତରୁ କେତେ ଯୁବକଙ୍କୁ ବଢ଼େଇ କାମ, ସିଲେଇ କାମ, ତନ୍ତ କାମ ଇତ୍ୟାଦି ଶିକ୍ଷା ଦିଆ ହେଉଛି। କିନ୍ତୁ ମନୋଭାବରେ ପରିବର୍ତ୍ତନ ଅଣାଯାଇ ନଥିବାରୁ ଆମ୍ଭମାନଙ୍କର ଏସବୁ ଉଦ୍ୟମ ହରିଜନଙ୍କର ମଙ୍ଗଳ ସକାଶେ ନହୋଇ ଅମଙ୍ଗଳକର ହୋଇ ଉଠୁଅଛି। ଦେବାଳୟରୁ ହରିଜନ ପ୍ରତି ଭାତି ପ୍ରଦର୍ଶନ କରାଯାଉଅଛି। ମନ୍ଦିର ଦ୍ୱାର ଖୋଲା ବୋଲି ଘୋଷଣା ଦିଆଗଲେ ବା ଲାଭ କଣ ? ମିଶ୍ରିତ ସ୍କୁଲ ହେଲା ବୋଲି ପଞ୍ଚମା ସ୍କୁଲ ଭଙ୍ଗାଯାଉଛି। କିନ୍ତୁ ସେହି ତଥାକଥିତ ମିଶ୍ରିତ ସ୍କୁଲରେ ହରିଜନ ବାଳକ ଏକବାରେ ସ୍ଥାନ ପାଉନାହିଁ କିମ୍ବା ସ୍ଥାନ ପାଇଲେ

ମଧ୍ୟ ତା ପ୍ରତି ଭିନ୍ନ ବ୍ୟବହାର କରାଯାଉଛି; ତାର ପଢ଼ାରେ କିଛି ଉନ୍ନତି ନ ହେବାରୁ ଏବଂ ତାପ୍ରତି ଜାତିଆ ହିନ୍ଦୁ ଶିକ୍ଷକ ଓ ଛାତ୍ରମାନଙ୍କର ଘୃଣା ରହୁଥିବାରୁ ସେ ସ୍କୁଲ ଛାଡ଼ି ଚାଲିଆସୁଛି। ଏଣେ ପଞ୍ଚମା ସ୍କୁଲ ଭଙ୍ଗାଯାଇଥିବାରୁ ସେ ନିରକ୍ଷର ହୋଇ ରହୁଛି। ଯେଉଁ ହରିଜନ ବଢ଼େଇ ତାର କାମ ଇତ୍ୟାଦି ଶିଖୁଛି, ତା ହାତରେ ଜାତିଆ ହିନ୍ଦୁମାନେ ଘରେ କାମ କରାଇଲେ ତ ହେବ। ସେମାନଙ୍କ ନୂତନ ବ୍ୟବସାୟ ସହିତ ସହଯୋଗ କରିବାକୁ ଜାତିଆ ହିନ୍ଦୁମାନେ ରାଜି ନୁହନ୍ତି। ବ୍ରହ୍ମପୁର ହାଡ଼ିମାନଙ୍କ ଭିତରେ ମୁଁ ଦେଖୁଛି, ସେମାନେ ପନିପରିବା ବିକ୍ରିକଲେ ବେଶ୍ ଚାରିପଇସା ରୋଜଗାର କରନ୍ତେ। କିନ୍ତୁ ଭୟ କରୁଛନ୍ତି ତାହା ସେମାନଙ୍କ ହାତରୁ ଜାତିଆ ହିନ୍ଦୁମାନେ କିଣିବେ ନାହିଁ ବୋଲି। ସେମାନେ ଲୁଗା କାଚିବା, କ୍ଷୌର କରିବା ଇତ୍ୟାଦିରେ ପାରଙ୍ଗମ ଥାଇ ସୁଦ୍ଧା ସେ ବ୍ୟବସାୟ ଚଳାଇ ପାରୁନାହାଁନ୍ତି। ସେମାନଙ୍କ ଆଗରେ ଏତେ ପ୍ରକାର ପ୍ରତିବନ୍ଧକ ଥିବା ବେଳେ ସେମାନଙ୍କୁ ଘରୋଇ ଚାକିରୀରେ ନିଯୁକ୍ତ କରିବାକୁ ହରିଜନ ସେବକ ସଂଘ ଯେ ସ୍ଥିର କରିଛନ୍ତି ତାହା କେବଳ କାଗଜରେ ଲେଖା ହୋଇ ରହିବ ସିନା। ଏସବୁ ଅଭାବ ଦୂର କରିବା ନିମନ୍ତେ ପ୍ରବଳ ଉଦ୍ୟମ ଓ ଆନ୍ଦୋଳନ ଚାଲିବା ଆବଶ୍ୟକ। ଏହି ଦୀର୍ଘ ବିବରଣୀ ଜୟମଙ୍ଗଳଙ୍କର ଦଳିତ ସମସ୍ୟା ସମାଧାନ ଦିଗରେ ପ୍ରଚେଷ୍ଟାର ସୂଚନା ଦିଏ। ତାଙ୍କର ସାମାଜିକ ସଂସ୍କାର ସଂପର୍କିତ ସଂପ୍ରସାରିତ ଦୃଷ୍ଟିକୋଣ ଏହିପରି କେତେକ ତାତ୍ତ୍ୱିକ ଆଲୋଚନାରୁ ସ୍ପଷ୍ଟ ହୋଇଯାଏ।

ଏପ୍ରିଲ ୧୯୩୪ରେ ହଳଦିଆ ପଦର ଶାନ୍ତି ଆଶ୍ରମଠାରେ ଗଂଜାମ ଜିଲା ଉତ୍କଳ ହରିଜନ ସେବକ ସଂଘର କେନ୍ଦ୍ର ଜୟମଙ୍ଗଳଙ୍କ ପ୍ରଚେଷ୍ଟାରେ ଖୋଲା ଯାଇଥିଲା। ଏହି କେନ୍ଦ୍ରର ସ୍କୁଲ ଓ ଲାଇବ୍ରେରୀ ଦ୍ୱାର ଉଦ୍‌ଘାଟନ କରିବା ନିମନ୍ତେ ସେ ନିର୍ମଳନଳିନୀ ଦେବୀଙ୍କୁ ଅନୁରୋଧ କରିଥିଲେ।

ନିର୍ମଳନଳିନୀ ଏହି ଅନୁରୋଧ ରକ୍ଷା କରି ହରିଜନମାନଙ୍କ ଶିକ୍ଷା ଓ ଉନ୍ନତି ସମ୍ବନ୍ଧେ ଏକ ସୁନ୍ଦର ଅଭିଭାଷଣ ଦେଇଥିଲେ। ଏହାପରେ ପଣ୍ଡିତ ବାଣୀକିଙ୍କର ଶର୍ମା ଏହି ବିଷୟରେ କିଛି କହିଥିଲେ। (ନବୀନ, ଏପ୍ରିଲ ୧୭, ୧୯୩୪)

ପତିତପାବନ ମିଶନ୍ (ବ୍ରହ୍ମପୁର)ର ସଭାପତି ହିସାବରେ ୧୯୩୪ରେ ବ୍ରହ୍ମପୁରର ହରିଜନ ସାହିଗୁଡ଼ିକର ସମସ୍ୟା ଉପରେ ଆଲୋକପାତ କରି ରଥ ମୁନିସ୍‌ପାଲ୍‌ଟି ଚେୟାରମାନ୍‌ଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ। ପତିତପାବନ ମିଶନ୍ ପକ୍ଷରୁ ୧୯୩୪ ପୂର୍ବରୁ ଆନ୍ଦୋଳନ ହେଲାରୁ କେତେକ ହରିଜନ ସାହିରେ ନାମକୁ ମାତ୍ର ଗୋଟାଏ ଆଲୁଅ ଦିଆଯାଇଥିଲା। ୧୯୩୪ରେ ସେହି ଗୋଟିଏ ଆଲୁଅ ମଧ୍ୟ ଲାଗୁ ନଥିଲା। ଲୋଚପଡ଼ା ରାସ୍ତା ପାଖରେ ଥିବା ହାଡ଼ିସାହିକୁ ଯେ ଆଲୁଅ ଦିଆଯାଇଥିଲା ତାହାକୁ ଆଲୁଅ ଲଗାଇବା ଲୋକ ଉଠାଇ ନେଇ କହିଥିଲା ଯ- "ହାଡ଼ିସାହିରେ କିଏ ଆଲୁଅ ଦେଇଥିଲା ରେ ?" ଜୟମଙ୍ଗଳ ଏହି ସମସ୍ୟା ଉପଲବ୍‌ଧି କରି ମତ ଦେଇଥିଲେ - "ଦେଶବ୍ୟାପୀ ତୁମୂଳଭାବେ ହରିଜନ ଆନ୍ଦୋଳନ ଚଳିଥିବା ବେଳେ ଏବଂ ଜଣେ କଂଗ୍ରେସବାଲା ମୁନିସ୍‌ପାଲ୍ ଚେୟାରମ୍ୟାନ୍ ଥିବା ବେଳେ ହରିଜନମାନଙ୍କୁ ଏପରି ଦୁଃଖ ଦିଆଯିବା ବଡ଼ ପରିତାପର ବିଷୟ ହେବ।" (ନବୀନ, ୨୨ ମେ ୧୯୩୪)

ପତିତପାବନ ସଂଘ (ବ୍ରହ୍ମପୁର) ର ସଭାପତି ଥାଇ ୧୯୩୪ ଜୁନ୍ ମାସରେ ଗ୍ରାମ ସଂଗଠନ କାର୍ଯ୍ୟରେ ଜୟମଙ୍ଗଳ ମନ ଦେଇଥିଲେ। ଜୁନ୍ ୩, ୧୯୩୪ରେ ବ୍ରହ୍ମପୁରରୁ ବାହାରି ଖଲିକୋଟ ଆଠଗଡ଼ ତାଲୁକାରେ ପଦବ୍ରଜରେ ପ୍ରଚାର କରି ଜୁନ୍ ୧୧ ତାରିଖରେ ସେ ବ୍ରହ୍ମପୁରକୁ ଫେରି ଆସିଥିଲେ। ତାଙ୍କ ପ୍ରଚାର ଯାତ୍ରାରେ ଉକ୍ତ ତାଲୁକାର ବ୍ରହ୍ମଚାରୀ ସ୍ୱାଇଁ ଓ ବିନାୟକ ସାମନ୍ତରାୟ ଯୋଗ ଦେଇଥିଲେ। ପ୍ରଥମେ ପଥରାରେ ସଭା

ହୋଇଥିଲା । ଏହି ସଭାରେ ବଳନ୍ତର, ଶ୍ରୀ ନଳିନାକ୍ଷପୁର, ଆଳପୁର, ଉଫୁଲି ଆଳପୁର ଓ ପଥରାର ଲୋକମାନେ ଯୋଗ ଦେଇଥିଲେ । ଗ୍ରାମର ଦଳସବୁ ଭାଙ୍ଗି ଏକତା ପାଶରେ ଆବଦ୍ଧ ହେବା ପାଇଁ ଜୟମଙ୍ଗଳ ଲୋକଙ୍କୁ ଉପଦେଶ ଦେଇଥିଲେ । ପରିଶେଷରେ ସବୁ ଗ୍ରାମର ସବୁ ଜାତିର ୧୪ଜଣ ପ୍ରତିନିଧିଙ୍କୁ ନେଇ ଏଠାରେ ଏକ ଗ୍ରାମ ସଂଗଠନ କେନ୍ଦ୍ର ଖୋଲା ହେଲା । ହରିହର ପଣ୍ଡା ଏହାର ସଂପାଦକ ହେଲେ । ଦ୍ୱିତୀୟ ସଭା ଲଙ୍ଗଳେଶ୍ୱରରେ ହେଲା । ଏଠାରେ ପଲ୍ଲୀବାସୀଙ୍କ ଅଧିକାର ସଂପର୍କରେ ବକ୍ତୃତା ଦେଇ ଅଗାଧୁ ଚରଣ ଦାସଙ୍କୁ ସଂପାଦକ ରଖି ପତିତପାବନ ସଂଘର ଏକ କେନ୍ଦ୍ର ଜୟମଙ୍ଗଳ ଖୋଲିଲେ । (ଆଶା, ଜୁନ୍ ୧୮, ୧୯୩୪)

୧୯୨୦ କୁମାରପୂର୍ଣ୍ଣିମା ରାତ୍ରରେ ଶ୍ରୀବତ୍ସ ପଣ୍ଡାଙ୍କ ସହିତ ଋଷିକୁଲ୍ୟା ତୀରର ଏକ ନିର୍ଜନ ସ୍ଥାନରେ ପତିତପାବନ ସଂଘ ପ୍ରତିଷ୍ଠାର ପରିକଳ୍ପନା ରଥ କରିଥିଲେ । (ନବୀନ, ନଭେମ୍ବର ୪, ୧୯୪୭) ୧୯୨୧-୨୨ରୁ ୧୫ ବର୍ଷଧରି ପତିତପାବନ ମିଶନ୍ ଜୟମଙ୍ଗଳଙ୍କ ନେତୃତ୍ୱରେ ବ୍ରହ୍ମପୁରରେ ସମାଜ ସଂସ୍କାର କାର୍ଯ୍ୟରେ ଆଗେଇ ଯାଇଥିଲା । ୧୯୩୬ରେ ରମ୍ଭାଠାରେ ଏହାର ପଞ୍ଚଦଶ ବାର୍ଷିକ ଉତ୍ସବ ହୋଇଯାଇଥିଲା । ୧୯୩୭ ମସିହାରେ ଏହାର ୧୬ଶ ବର୍ଷ ଉତ୍ସବ ପାଇଁ ସାଧାରଣ ପରିଷଦ ଓ କାର୍ଯ୍ୟ ନିର୍ବାହିକା ସଭା ଗଠିତ ହୋଇଥିଲା । ଏହାର ସଭାପତି ହେଲେ ଜଗବଂଧୁ ସିଂହ ଏବଂ ଜେନେରାଲ୍ ସେକ୍ରେଟାରୀ ଓ କୋଷାଧ୍ୟକ୍ଷ ହେଲେ ଜୟମଙ୍ଗଳ ରଥ । ଏହି ସଭାରେ କେତେକ ସବ୍‌କମିଟି ଗଠନ କରାଯାଇଥିଲା । ସେଗୁଡ଼ିକ ହେଲେ-

୧. ବାଲ୍ୟବିବାହ ବିରୋଧକ ସଭା
୨. ବିଧବା ବିବାହ ସହାୟକ ସଭା
୩. ନାରୀରକ୍ଷା ସଭା
୪. ହରିଜନ ପ୍ରଚାର ସଭା

ଏହି ସବ୍‌କମିଟିମାନଙ୍କରେ ଜୟମଙ୍ଗଳ ସଭାପତି ଥିଲେ। (ନବୀନ, ୧୮ ଫେବୃଆରୀ ୧୯୩୬)

୧୯୩୬ ମସିହାରେ ଗଂଜାମର ପରିତ୍ୟକ୍ତ ଓଡ଼ିଆ ଅଞ୍ଚଳରେ ଓଡ଼ିଆର ସୁରକ୍ଷା ପାଇଁ ପ୍ରବଳ ଆନ୍ଦୋଳନ ଆବଶ୍ୟକ ବୋଲି ଜୟମଙ୍ଗଳ ଦାବି କରିଥିଲେ। ୨୩ ନଭେମ୍ବର ୧୯୩୬ରେ ନବୀନରେ ଏ ସଂପର୍କରେ ଏକ ବିବରଣୀରେ ସେ କହିଥିଲେ - ଇଚ୍ଛାପୁର, ଜଳନ୍ତର, ମଂଜୁଷା, ବୁଡାରସିଙ୍ଗି, ତରଳା, ଟିକିଲି ଓ ପାରଳା ଏସବୁ ଖାଣ୍ଟି ଓଡ଼ିଆ ଅଞ୍ଚଳ। ବଡ ଦୁଃଖର ବିଷୟ ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେବାବେଳେ ଏମାନେ ଗଂଜାମରୁ ପରିତ୍ୟକ୍ତ ହୋଇ ମାନ୍ଦ୍ରାଜ ପ୍ରଦେଶରେ ପୂର୍ବାପେକ୍ଷା ବହୁ ପରିମାଣରେ ଦୁର୍ବଳ ହୋଇ ପଡ଼ିଛନ୍ତି। ଓଡ଼ିଶା ସହିତ ଏମାନଙ୍କ ମିଳନ ଯେତେ ବିଳମ୍ବ ହେବ, ଏମାନଙ୍କ ଜାତୀୟତା ବିଲୋପ ହେବାର ସେତିକି ଆଶଙ୍କା ରହିଛି। ସେଦିନ ଇନ୍ଦୁପୁର (ଇଚ୍ଛାପୁର) ଓଡ଼ିଆ ବାଳିକା ବିଦ୍ୟାଳୟକୁ ଜଣେ ତେଲୁଗୁ ଶିକ୍ଷକକୁ ପଠାଗଲା। ଓଡ଼ିଆ ବାଳିକାମାନେ ତେଲୁଗୁ ନପଢ଼ି ଓଡ଼ିଆ ଶିକ୍ଷକ ପାଇଁ ଦାବୀ କଲେ। ଏ ଛାରକଥା ପାଇଁ ପ୍ରବଳ ଆନ୍ଦୋଳନ ଲୋଡା ହେଲା। ଲୋକେ ଯଦି ନିଶେଷ୍ଟ ରହିଥାନ୍ତେ, ଓଡ଼ିଆ ବାଳିକାମାନେ ହୁଏତ ତେଲଗୁ ପଢ଼ିବାକୁ ବାଧ ହୋଇଥାନ୍ତେ କିମ୍ବା ଶିକ୍ଷାରୁ ଏକାବେଳକେ ବଞ୍ଚିତ ହୋଇ ପଡ଼ିଥାଆନ୍ତେ। ମଂଜୁଷାର ଗ୍ରାମ୍ୟକରଣମାନେ ତେଲୁଗୁରେ ଲେଖାପଢ଼ା କରିବାକୁ ରେଭେନ୍ୟୁ ଇନିସ୍‌ପେକ୍ଟରଙ୍କ ଦ୍ୱାରା ସ୍ଥାନେ ସ୍ଥାନେ ବାଧ ହେଉଥିବାର ଶୁଣାଯାଏ। ପରିତ୍ୟକ୍ତ ଓଡ଼ିଆ ଅଞ୍ଚଳରେ ଏହି ଅଳ୍ପଦିନ ଭିତରେ ଏପରି କେତେ ଅତ୍ୟାଚାର ଦେଖାଗଲାଣି। ବେଳହୁଁ ଜାଗ୍ରତ ନ ହେଲେ ଆତ୍ମରକ୍ଷା ଅସମ୍ଭବ ହେବ। "ଗଂଜାମର ପରିତ୍ୟକ୍ତ ଓଡ଼ିଆ ସମାଜ" ନାମକ ଯେ ଅନୁଷ୍ଠାନଟି ଗଢ଼ା ହୋଇଛି ତାହା ଆହୁରି ସେପରି ଶକ୍ତିଶାଳୀ ହୋଇପାରି ନାହିଁ। ତା ହୋଇଥିଲେ ଲାଟଙ୍କ ଗଂଜାମ ଗସ୍ତରେ ଓଡ଼ିଆମାନଙ୍କ

ଡେପ୍ୟୁଟେସନ୍ ଅବଶ୍ୟ ପହଁଞ୍ଚି ପାରିଥାନ୍ତା । ଏହି ଅନୁଷ୍ଠାନକୁ ଶକ୍ତିଶାଳୀ କରିବା ପାଇଁ ଆମ୍ଭମାନଙ୍କୁ ଶୀଘ୍ର ଏକ ସମ୍ମିଳନୀର ଆୟୋଜନ କରିବାକୁ ହେବ । ଅନୁଷ୍ଠାନର ଯୁବକ ସଂପାଦକ ଭୁବନେଶ୍ୱର ସନ୍ତୋଷ ରାୟ ଏଥିରେ ମନପ୍ରାଣ ଦେଇ କାର୍ଯ୍ୟ କଲେ ଏବଂ ତାଙ୍କୁ ସାହଚର୍ଯ୍ୟ ଦେବାପାଇଁ ପରିତ୍ୟକ୍ତ ଅଞ୍ଚଳରୁ ଦଳେ ଯୁବକ ବାହାରିପଡ଼ିଲେ ଆମ୍ଭମାନଙ୍କ ଉଦ୍ୟମ ଯେ ଆବଶ୍ୟ ଫଳବତୀ ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ସମ୍ମିଳନୀ ପାଇଁ ପରିତ୍ୟକ୍ତ ଅଞ୍ଚଳର ଗ୍ରାମେ ଗ୍ରାମେ ପ୍ରଚାର କରିବାକୁ ହେବ । ଯେପରି ପ୍ରତ୍ୟେକ ସ୍ଥାନରୁ ପ୍ରତିନିଧି ଆସି ସମ୍ମିଳନୀରେ ଯୋଗଦେବେ । ପାରଳାର ମହାରାଜ, ସୁରଙ୍ଗୀ, ଟିକିଲି, ତରଳା ଓ ବୁଡାରସିଂଗିର ରାଜାମାନେ ଏବଂ ମଂଜୁଷାର ରାମକୃଷ୍ଣ ଦେଓ ଯେ ଏହି ଉଦ୍ୟମରେ ନେତୃତ୍ୱ ଗ୍ରହଣ କରିବେ ଏଥିରେ ସନ୍ଦେହ କରିବା ପାଇଁ କାରଣ ନାହିଁ । ସମ୍ମିଳନୀ ସଂଗେ ସଂଗେ ଗଞ୍ଜାମର ପରିତ୍ୟକ୍ତ ଓଡ଼ିଆ ଅଞ୍ଚଳରେ ପ୍ରବଳ ଆନ୍ଦୋଳନ ଚାଲିବ ଏବଂ ଅଚିରେ ଏହି ଅଞ୍ଚଳ ଓଡ଼ିଶା ସହିତ ମିଳିତ ହେବ ଏହି ଆଶ କରି ରହିଲି ।”

ଓଡ଼ିଆ ଆନ୍ଦୋଳନକୁ ଉତ୍ସାହିତ କରିବା ସହିତ ଜୟମଙ୍ଗଳ ତାଙ୍କର ସମାଜ ସଂସ୍କାର ଅଭିଯାନ ପାଇଁ ଉଦ୍ଦିଷ୍ଟ ପତିତପାବନ ମିଶନର ନାନା ଶାଖା ଗଂଜାମରେ ଖୋଲିବାରେ ଲାଗିଲେ । ୧୯୩୭ରେ ତାଙ୍କ ନେତୃତ୍ୱରେ ଇନ୍ଦୁପୁରଠାରେ ପତିତପାବନ ମିଶନର ଏକ କେନ୍ଦ୍ର ସ୍ଥାପନ କରାଯାଇଥିଲା । ଇନ୍ଦୁପୁର କେନ୍ଦ୍ରରେ ୧୯୩୭ରେ ବାର୍ଷିକ ଉତ୍ସବରେ ଜୟମଙ୍ଗଳ ସଭାପତି ହୋଇଥିଲେ । ସେଥିରେ ଭକ୍ତକବି କାଳିଦାସଙ୍କ ସ୍ମୃତିସଭା ହୋଇଥିଲା । କଣ୍ଡରା ଜାତିର ଉନ୍ନତି ବିଷୟ ନେଇ ଏହି ଉତ୍ସବରେ ପଣ୍ଡିତ ଦାମୋଦର କବିରତ୍ନ, ଅନ୍ତର୍ଯ୍ୟାମୀ ରାୟଗୁରୁ, ଗିରିଧାରୀ ବେହେରା, ଇଶ୍ୱର ବେହେରା ଜୟମଙ୍ଗଳଙ୍କ ଉତ୍ସାହ କ୍ରମେ ଭାଷଣ ଦେଇଥିଲେ । (ଆଶା, ୨୨ ନଭେମ୍ବର, ୧୯୩୭)

୧୯୩୭ରେ ବ୍ରହ୍ମପୁରରେ ନାରୀମଙ୍ଗଳ ଆଶ୍ରମ ଜୟମଙ୍ଗଳଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହୋଇଥିଲା । ସେତେବେଳକୁ ଓଡ଼ିଶାର ପ୍ରସିଦ୍ଧ ସଂସ୍କାରକ ବୈରାଗୀ ମିଶ୍ର କଟକରେ ନାରୀମଙ୍ଗଳ ସମିତି ଗଠନ କରି ବିଧବା ବିବାହ, ନାରୀଶିକ୍ଷା ଓ ଜାଗରଣକୁ ଉତ୍ସାହିତ କରିଥିଲେ । ଜୟମଙ୍ଗଳ ବ୍ରହ୍ମପୁରଠାରେ ଏହିପରି ଏକ ଅନୁଷ୍ଠାନ ଗଠନ କରି ନାରୀଜାଗରଣକୁ ଉତ୍ସାହିତ କରିଥିଲେ । ଏହି ଆଶ୍ରମର ସଭାନେତ୍ରୀ ଥିଲେ ଲକ୍ଷ୍ମୀବାଈ । ଚଂପାଦେବୀ ସଂପାଦିକା ଓ ଧନରକ୍ଷିକା ହେଲେ । ଜୟମଙ୍ଗଳ ରଥ ଅଡିଟର୍ ଏବଂ ରମାଦେବୀ ତତ୍ତ୍ୱାବଧାରିକା । ଜୟମଙ୍ଗଳ ରଥଙ୍କ ଉତ୍ସାହପୂର୍ଣ୍ଣ ବାଣୀରେ ନାରୀମଙ୍ଗଳ ଆଶ୍ରମର ଦ୍ୱିତୀୟ ବାର୍ଷିକ ଉତ୍ସବ ୨୯ ମେ ୧୯୩୮ରେ ସଫଳ ହୋଇଥିଲା । (ନବୀନ, ୭ ଜୁନ୍ ୧୯୩୮)

୧୯୩୮-୩୯ରେ ଜୟମଙ୍ଗଳ ଓଡ଼ିଆ ଜାତୀୟତାର ଉଚ୍ଚାରଣ ପାଇଁ ଉତ୍କଳ ସମ୍ମିଳନୀର ସଂପାଦକ ହୋଇଥିଲେ । ଓଡ଼ିଆ ଆନ୍ଦୋଳନର ଗତିପଥକୁ ବାଧା ଦେଉଥିବା ସଂକଟକୁ ଏଡ଼ାଇ ଦେବାପାଇଁ ସେ ସୁରଳାଠାରୁ ୨୨ ଅକ୍ଟୋବର ୧୯୩୮ରେ ଦୀର୍ଘ ଉଦ୍‌ବୋଧନ ଦେଇ କହିଥିଲେ - ମାନ୍ଦ୍ରାଜ ସରକାର ତାଙ୍କ ପ୍ରଦେଶରୁ ଓଡ଼ିଆ ଭାଷାକୁ ବହୁ ପରିମାଣରେ ବିଲୁପ୍ତ କରିଅଛନ୍ତି । ବିଶାଖାପାଟଣା ଜିଲାରେ ଟିକିଲି, ତରଳା, ମଂଜୁଷା, ବୁଡାରସିଙ୍ଗ୍, ଜଳନ୍ତର, ଇଚ୍ଛାପୁର ପ୍ରଭୃତି ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ସବୁର ବିଦ୍ୟମାନତା ସତ୍ତ୍ୱେ ସେ ଜିଲାରେ ଓଡ଼ିଆ ଦାବୀ ବହୁ କ୍ଷେତ୍ରରେ ଉପେକ୍ଷିତ ହେଉଅଛି । ଆନ୍ଧ୍ର ମହାସଭା ପୁଣି ଦାବୀ କରୁଛନ୍ତି ଯେ ଜୟପୁର, ପାରଳାଖେମୁଣ୍ଡି, ବ୍ରହ୍ମପୁର, ଗୋପାଳପୁର, ଛତ୍ରପୁର ପ୍ରଭୃତି ଓଡ଼ିଶାରୁ ନେଇ ଆନ୍ଧ୍ରପ୍ରଦେଶରେ ମିଶାଇବାକୁ ହେବ । କେବଳ ଦାବୀ କରିଦେଇ ସେମାନେ ତୁନି ହୋଇଯାଇ ନାହାଁନ୍ତି । ସେଥି ନିମନ୍ତେ ନାନା ଉପାୟରେ କାର୍ଯ୍ୟ କରିବାକୁ ଗୋଟିଏ ଶକ୍ତିଶାଳୀ

କମିଟି ଗଢ଼ିଅଛନ୍ତି । ଆଗାମୀ ଜନଗଣନା ପାଇଁ ଗଂଜାମ ଓ ବିଶାଖାପାଟଣା ଜିଲାମାନଙ୍କରେ କାର୍ଯ୍ୟ କରିବାକୁ ଆଜହୁଁ ଗୁପ୍ତ ଆୟୋଜନସବୁ ସେମାନଙ୍କର ଚାଲିଥିବା ଖବର ମିଳୁଛି । ପାରଳାଖେମୁଣ୍ଡିରେ ଆନ୍ଧ୍ର ପ୍ରାଦେଶିକ କଂଗ୍ରେସ କମିଟି ପକ୍ଷରୁ କଂଗ୍ରେସ ମେମ୍ବର ସଂଗ୍ରହ କରାହେଉଅଛି । ଏସବୁ ଦେଖିଶୁଣି ମଧ ଓଡ଼ିଆମାନେ ନୀରବ ନିଶ୍ଚେଷ୍ଟ । ଆମ୍ଭମାନଙ୍କର ବର୍ତ୍ତମାନ ବୁଝିବା ବଡ଼ ଆବଶ୍ୟକ ଯେ ଓଡ଼ିଆ ଜାତି ଆଗରେ ଯେପରି ସଂକଟ ସମୟ ଆସି ଉପସ୍ଥିତ ।

ଓଡ଼ିଆମାନେ ଜାଗ୍ରତ ହୁଅନ୍ତୁ । ଉତ୍କଳ ସମ୍ମିଳନୀକୁ ଶକ୍ତିଶାଳୀ କରି ନ ଗଢ଼ିଲେ ଭବିଷ୍ୟତ ଯୁଦ୍ଧରେ ଆମ୍ଭେମାନେ ନିଶ୍ଚୟ ପରାସ୍ତ ହେବୁ । କଂଗ୍ରେସବାଲାମାନେ ଏହି ସମ୍ମିଳନୀ ସହିତ ବିଶେଷ ସଂପୃକ୍ତ ରହିବା ଆବଶ୍ୟକ । ଡାକ୍ତର ପଟ୍ଟାଭି ଆନ୍ଧ୍ର ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥାଇ ମଧ ତାଙ୍କର ଆନ୍ଧ୍ର ମହାସଭା କାର୍ଯ୍ୟରେ କିପରି ନେତୃତ୍ୱ ନେଇଅଛନ୍ତି ଦେଖନ୍ତୁ । ସେମାନଙ୍କର ବଡବଡ କଂଗ୍ରେସ ନେତା ସମସ୍ତେ ସେହି ମହାସଭା କାର୍ଯ୍ୟରେ ବଦ୍ଧ ପରିକର । ସେମାନଙ୍କର ପ୍ରାଦେଶିକ କଂଗ୍ରେସ କମିଟି ଆନ୍ଧ୍ର ଆନ୍ଦୋଳନକୁ ପ୍ରତ୍ୟକ୍ଷ ରୂପେ ଚଳାଇଥିବା କଥା କାହାରି ଅବିଦିତ ନାହିଁ । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିକୁ ମଧ ସେପରି ଭାବେ ଆନ୍ଦୋଳନ ଚଳାଇବାକୁ ହେବ । ଏମାନଙ୍କ ଉଦ୍ୟମରେ ଶୀଘ୍ର ନିଖିଳ ଭାରତ କଂଗ୍ରେସ କମିଟିରେ ଏପରି ଏକ ନିର୍ଦ୍ଧାରଣ ଅନ୍ତତଃ ଲିପିବଦ୍ଧ ହୋଇରହୁ ଯାହାଦ୍ୱାରା ଜଣାଯିବ ଯେ ମାନ୍ଦ୍ରାଜ, ବଂଗ, ବିହାର, ମଧ୍ୟପ୍ରଦେଶରେ ଓଡ଼ିଶାର ଦାବୀ ରହିଛି । ଓଡ଼ିଆ ସରକାରଙ୍କର ମଧ ଏ ସଂକଟ ସମୟରେ ଦାୟିତ୍ୱ ବଡ଼ ଗୁରୁତର । ସରକାର ଦେଖନ୍ତୁ, ଗଂଜାମ ଓ କୋରାପୁଟ ଜିଲାମାନଙ୍କରେ ଆଗାମୀ ଜନଗଣନା ଶେଷ ହେବାଯାଏ ପ୍ରତ୍ୟେକ ବିଭାଗରେ ଯେପରି

କେବଳ ଓଡ଼ିଆ କର୍ମଚାରୀ ରହିବେ। ଜଣେ ଆନ୍ଧ୍ର କିରାଣୀ ଥିଲେ ମଧ୍ୟ ସେ ନିଶ୍ଚୟ ଓଡ଼ିଆ ଦାବୀକୁ ଖର୍ବ କରିବା ଚେଷ୍ଟା କରିବେ, ଏଥିରେ ସନ୍ଦେହ ନାହିଁ। ଏହା ଆମ୍ଭେମାନେ ବହୁକାଳରୁ ଅଂଗେ ନିଭାଇ ବୁଝିଛୁଁ।

ଉତ୍କଳ ସମ୍ମିଳନୀ ସଂଗଠନ କରିବା ଭାର ମୁଁ ନେଇଛି। ମୋ କ୍ଷୁଦ୍ର ଶକ୍ତିରେ ଯେତିକି ସମ୍ଭବ ତାହା ମୁଁ କରିଛି। ବର୍ତ୍ତମାନ ଏକ ଗୁରୁତର କାର୍ଯ୍ୟରେ ମୋତେ ସୁରଳାରେ ଆବଦ୍ଧ ହୋଇ ରହିବାକୁ ହୋଇଛି ଏବଂ କେବେ ଯେ ଏଠାରୁ ମୁକ୍ତ ହୋଇପାରିବି, ତାହା ମୋର ଅଗୋଚର। ଅତଏବ ଦେଶବାସୀ ଭାଇଭଉଣୀଙ୍କୁ ମୁଁ ଏହି ନିବେଦନ କରୁଅଛି ସେମାନେ ଉତ୍କଳ ସମ୍ମିଳନୀ ସଂଗଠନର ଅସଂପୂର୍ଣ୍ଣ କାର୍ଯ୍ୟସବୁ ଶୀଘ୍ର ସଂପୂର୍ଣ୍ଣ କରନ୍ତୁ। ଗଂଜାମ, ପୁରୀ, କଟକ, ସିଂହଭୂମି ଓ ମାନଭୂମି ଜିଲା ସମିତିମାନ ଗଠିତ ହୋଇସାରିଛି। ଅନ୍ୟାନ୍ୟ ସମସ୍ତ ଜିଲାରେ ଶୀଘ୍ର ଜିଲା ସମିତି ସବୁ ଗଠିତ ହେଉ। ପ୍ରଚାରକମାନେ ବାହାରି ଗ୍ରାମେ ଗ୍ରାମେ ବୁଲି ଓଡ଼ିଆ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରନ୍ତୁ ଏବଂ ପ୍ରତ୍ୟେକ ଗ୍ରାମରେ ଗ୍ରାମସଭା ସବୁ ଗଠିତ ହେଉ। ଉତ୍କଳ ସମ୍ମିଳନୀର ସ୍ୱେଚ୍ଛାସେବକ ଦଳ 'ଉତ୍କଳ ଅବକାଶ ବାହିନୀ' ଠାରେ ମୋର ପୂର୍ଣ୍ଣ ଭରସା ରହିଛି। ସେମାନେ ବିଚ୍ଛିନ୍ନ ଅଞ୍ଚଳରେ ବୁଲି ଓଡ଼ିଆମାନଙ୍କ ଅଭାବ ଅସୁବିଧାଦିର କଥା ବୁଝନ୍ତୁ ଏବଂ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ପରାମର୍ଶ ନେଇ ସେସବୁ ଅଭାବ ଅସୁବିଧା ଦୂର କରିବାକୁ ଯତ୍ନବାନ୍ ହୁଅନ୍ତୁ।"

ଉତ୍କଳ ସମ୍ମିଳନୀର ସଂପାଦକ ଭାବରେ ଆନ୍ଧ୍ର ପ୍ରଦେଶରେ ପରିତ୍ୟକ୍ତ ହୋଇଥିବା ପ୍ରାୟ ୧୫ ଲକ୍ଷ ଓଡ଼ିଆମାନଙ୍କର ଘୋର ସଂକଟାପନ୍ନ ଅବସ୍ଥା ସଂପର୍କରେ ଜୟମଙ୍ଗଳ ସଚେତନ ଥିଲେ। ୧୯୩୯ରେ ମାନ୍ଦ୍ରାଜ ସରକାରଙ୍କର ଶିକ୍ଷା ବିଭାଗରେ ନୂତନ ବ୍ୟବସ୍ଥା ହେବାରୁ ସେହି ପ୍ରଦେଶରୁ ଓଡ଼ିଆ ଭାଷା ଉଠିଯାଇଥିଲା ଏବଂ ପ୍ରାୟ ପନ୍ଦର ଲକ୍ଷ ଓଡ଼ିଆ ଆପଣା

ସନ୍ତାନସନ୍ତତିଙ୍କୁ ତେଲଗୁ ଭାଷାରେ ଶିକ୍ଷାଦେବାକୁ ବାଧ ହୋଇଥିଲେ। ବିଶାଖାପାଟଣା ସହର ଏବଂ ସେ ଜିଲାର ପାର୍ବତୀପୁର, ପାଲକୋଣ୍ଡା, ଟିକିଲି, ମଂଜୁଷା, ସୋମପେଣ୍ଠ, ଇଛାପୁର ପ୍ରଭୃତି ସ୍ଥାନର ହାଇସ୍କୁଲ ଓ ମିଡ଼ିଲ ସ୍କୁଲମାନଙ୍କରେ ଓଡ଼ିଆ ଛାତ୍ରମାନେ ତେଲୁଗୁ ମାଧ୍ୟମରେ ଶିକ୍ଷା ପାଇବେ ବୋଲି ଇସ୍ତାହାର ପ୍ରକାଶ ପାଇବା ମାତ୍ରେ ଅସଂଖ୍ୟ ପ୍ରାଥମିକ ବିଦ୍ୟାଳୟରୁ ଓଡ଼ିଆ ବାଳକ ବାଳିକାମାନଙ୍କୁ ତେଲଗୁ ଶିକ୍ଷା ଦେବାର ଉଦ୍ୟମ ହେଲା। ୧୯୪୦ ମସିହା ପୂର୍ବରୁ ବିଶାଖାପାଟଣା ଜିଲାରୁ ଓଡ଼ିଆ ଭାଷା ଲୋପ ପାଇବା ଆଶଙ୍କା କରି ଜୟମଙ୍ଗଳ ୧୯୩୯ରେ କହିଥିଲେ - ଗଂଜାମ ଜିଲା ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଥିବାବେଳେ ଓଡ଼ିଆ ପ୍ରଦେଶ ଗଠିତ ନ ହୋଇ ଓଡ଼ିଆଙ୍କ ଶକ୍ତି ସେଠାରେ ବଳବତୀ ହୋଇ ରହିଥିଲା। ଯେଉଁ ଆନ୍ଧ୍ରମାନେ ସେ ଶକ୍ତି ଆଗରେ ମୁଣ୍ଡ ନୁଆଁଇ ରହିଥିଲେ ସେମାନଙ୍କ ହାତରେ ଆଜି ବିଶାଖାପାଟଣାର ଶାସନଭାର ରହିଯିବାରୁ ସେମାନେ ବିଜୟ ଗର୍ବରେ ଉନ୍ମତ୍ତ ହୋଇ ଓଡ଼ିଆଙ୍କୁ ପଦଦଳିତ କରିବାକୁ ବସିଅଛନ୍ତି। ସେଠାରେ ବର୍ତ୍ତମାନ ଓଡ଼ିଆମାନେ ପ୍ରତିବାଦର ସ୍ୱର ଉଠାଇବାକୁ ମଧ୍ୟ ସାହସ କରିପାରୁ ନାହାଁନ୍ତି। ଏ ସମୟରେ ଓଡ଼ିଶାବାସୀଙ୍କ ଓଡ଼ିଶା ସରକାର ଜାଗ୍ରତ ନ ହେଲେ ବିଶାଖାପାଟଣା ଜିଲାର ଆଶା ଚିରଦିନ ସକାଶେ ଆମ୍ଭମାନଙ୍କୁ ଛାଡ଼ିବାକୁ ହେବ। ଏଣୁ ସମସ୍ତେ ପ୍ରସ୍ତୁତ ରୁହନ୍ତୁ। ଯେବେ ଗୋଟିଏ ଦିନ ସ୍ଥିର ହୋଇ ଘୋଷଣା କରାଯିବ ସେଦିନ ପୁରପଲ୍ଲୀରେ ‘ବିଶାଖାପାଟଣା ଦିବସ’ ପାଳନ କରିବେ। ମାନ୍ଦ୍ରାଜ ସରକାର ଶିକ୍ଷା ବିଭାଗ ଦେଇ ବିଶାଖାପାଟଣା ଜିଲାରେ ଓଡ଼ିଆଙ୍କ ପ୍ରତି ଯେ ଅତ୍ୟାଚାର କରୁଅଛନ୍ତି ତାର ତୀବ୍ର ପ୍ରତିବାଦ ହେଉ। ମାନ୍ଦ୍ରାଜ ତଥା ଓଡ଼ିଶାର ସରକାରମାନେ ତାହା ଜାଣିବାର ବ୍ୟବସ୍ଥା କରାଯାଉ। ଏହି ଉଦ୍ଦେଶ୍ୟରେ ହରତାଳ, ପଟୁଆର, ସଭାସମିତି ଯେ ଯାହା କରିପାରିବେ କରନ୍ତୁ। ଏ ବାଦ୍

ବିଶାଖାପାଟଣା ଜିଲାର ପୁରପଲ୍ଲୀର ଓଡ଼ିଆ ଉଦ୍ୟମ ଜାଗ୍ରତ କରିବା ସକାଶେ କାର୍ଯ୍ୟ କରିବାକୁ ପାଣ୍ଠି ସଂଗ୍ରହ କରାଯାଉ। ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭା କିମ୍ବା 'ବିଚ୍ଛିନ୍ନ ଉତ୍କଳ ଅବକାଶ ବାହିନୀ' ବିଶାଖାପାଟଣା ଦିବସ ପାଇଁ ତାରିଖ ସ୍ଥିର କରି ଜଣାଇବେ ଅପେକ୍ଷା କରନ୍ତୁ। (ନବୀନ, ୧୪ ମାର୍ଚ୍ଚ ୧୯୩୯)

ଏହିପରି ବିବୃତ୍ତି ଦେଇ ଜୟମଙ୍ଗଳ ଉତ୍କଳ ସମ୍ମିଳନୀର ସଂପାଦକ ହିସାବରେ ଗଂଜାମ ଓ ବିଶାଖାପାଟଣାର ଓଡ଼ିଆମାନଙ୍କୁ ଏକତ୍ରିତ ହେବା ପାଇଁ ସୁଯୋଗ ଦେଇଥିଲେ। ୧୯୩୯ ସାରା ଜୟମଙ୍ଗଳ ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ଏକତା ଓ ପରିଚିତି ପ୍ରତିଷ୍ଠା ପାଇଁ ଏକ ପ୍ରକାର ଆନ୍ଦୋଳନ ଆରମ୍ଭ କରିଥିଲେ। ଉତ୍କଳ ସମ୍ମିଳନୀ ସ୍ଥାୟୀ ସଭାର ଏକ ବୈଠକ ଗଂଜାମର ସୋରଡାଠାରେ ମେ ୧୪ ୧୯୩୯ରେ ସେ ଡକାଇ ନିମ୍ନ ବିଷୟ ଉପରେ ଆଲୋଚନା କରିଥିଲେ;

୧. ବିଚ୍ଛିନ୍ନାଞ୍ଚଳ ସକାଶେ କର୍ମଯୋଜନା ପ୍ରସ୍ତୁତ କରିବାକୁ ଯେଉଁ ସବ୍-କମିଟି ଗଢ଼ାଯାଇଥିଲା ତାର ଭାର ଅନ୍ୟ ବ୍ୟକ୍ତିଙ୍କ ଉପରେ ଅର୍ପଣ କରିବା।

୨. ଡୋମିସାଇଲ୍ ସାର୍ଟିପିକେଟ୍ ବିଷୟକୁ ସବ୍‌କମିଟିର ରିପୋର୍ଟ ଗ୍ରହଣ କରିବା।

୩. ମାନ୍ଦ୍ରାଜ ସରକାର ବିଶାଖାପାଟଣା ଜିଲାରୁ ଓଡ଼ିଆ ଭାଷାକୁ ଉଠାଇ ଦେଇଥିବା ଯୋଗୁଁ ଏବଂ ତାହା ସମର୍ଥନ କରି ମାନ୍ଦ୍ରାଜର ପ୍ରଧାନମନ୍ତ୍ରୀ କହିଥିବା ଯୋଗୁଁ ଯେ ଅବସ୍ଥା ସୃଷ୍ଟି ହୋଇଛି ସେ ସମ୍ବନ୍ଧେ ସମ୍ମିଳନୀର କର୍ତ୍ତବ୍ୟ ନିରୂପଣ।

୪. ବିଭିନ୍ନ ଜିଲାର ପ୍ରତିନିଧିମାନଙ୍କ ସ୍ଥାୟୀସଭା ସଭ୍ୟ ରୂପେ ଗ୍ରହଣ। (ମେ ୯, ୧୯୩୯, ଦେଶକଥା)

୧୯୩୯ରେ ଉତ୍କଳ ସମ୍ମିଳନୀର ସ୍ଥାୟୀ ସଭା ପାଇଁ ଜୟମଙ୍ଗଳ ଆହ୍ୱାନ କରିଥିଲେ। ସେଥିରେ ୯୯ ଜଣଙ୍କୁ ନିଆଯିବାର ବ୍ୟବସ୍ଥା ହୋଇଥିଲା। ଏଥିରୁ ୧୧ଜଣ ମଂଜୁଷା ଉତ୍କଳ ସମ୍ମିଳନୀ ଅଧିବେଶନରେ ନିର୍ବାଚିତ ହୋଇଥିଲେ। ଅବଶିଷ୍ଟ ୮୮ ଜଣ ପାଇଁ କଟକରୁ ୧୨, ଗଂଜାମରୁ ୧୦, ବାଲେଶ୍ୱରରୁ ୮, ପୁରୀରୁ ୮., ବିଶାଖାପାଟଣାରୁ ୩, ଫୁଲଝରରୁ ୨, ସମ୍ବଲପୁରରୁ ୪, ସିଂହଭୂମିରୁ ୬, ମେଦିନିପୁରରୁ ୫, ଗଡ଼ଜାତ ସମୂହରୁ ୧୦, କୋରାପୁଟରୁ ୮, ପ୍ରବାସୀ ଓଡ଼ିଆ ୧୦, ମାନଭୂମିରୁ ୯ ଜଣଙ୍କୁ ଗ୍ରହଣ କରାଯିବ ବୋଲି ସେ ଦେଶକଥାରେ ବିଜ୍ଞାପନ ଦେଇଥିଲେ। (ଏପ୍ରିଲ ୨୨, ୧୯୩୯, ଦେଶକଥା)

ଉତ୍କଳ ସମ୍ମିଳନୀର ସଂପାଦକ ହିସାବରେ ଜୟମଙ୍ଗଳ ରଥ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷା ଓ ସଂସ୍କୃତିର ଲୋପ, ଓଡ଼ିଆ ଜାତୀୟତାର ବିନାଶ କିପରି ଘଟିଛି ଆନ୍ଧ୍ର ଉତ୍କଳ ଶୀର୍ଷକ ଆଲୋଚନାରେ ତାହା ପ୍ରକାଶ କରିଥିଲେ। "ଦେଶକଥା"ର ଡିସେମ୍ବର ୨୬, ୧୯୩୮ରେ ଏହି ପ୍ରସଙ୍ଗଟି ଉପସ୍ଥାପିତ ହୋଇଥିଲା। ସେଥିରେ ସେ ଉତ୍କଳ ସମ୍ମିଳନୀର ସଂପାଦକ ହିସାବରେ ଲେଖିଥିଲେ - ଆନ୍ଧ୍ର ଏକ ଶାସନାଧୀନ। ଉତ୍କଳ ବିଭିନ୍ନ ଶାସନର ଅଧିନ ଥିଲା ଏବଂ ବର୍ତ୍ତମାନ ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ମଧ୍ୟ ଋରୋଟି ବିଭିନ୍ନ ପ୍ରଦେଶରେ ପଡ଼ି ରହିଛନ୍ତି। ଦ୍ରାବିଡ଼ ଜାତୀୟ ବିଭିନ୍ନ ଶ୍ରେଣୀର ଲୋକଙ୍କୁ ନେଇ ମାନ୍ଦ୍ରାଜ ପ୍ରଦେଶ ଗଠିତ ହୋଇଥିଲେ ହେଁ ଆନ୍ଧ୍ରମାନେ ଏକ ସ୍ୱତନ୍ତ୍ର ପ୍ରଦେଶ ଲୋଡୁଅଛନ୍ତି ଏବଂ ସେହି କଳ୍ପିତ ପ୍ରଦେଶକୁ ସମୃଦ୍ଧିଶାଳୀ କରିବା ପାଇଁ ଓଡ଼ିଶାର କେତେକାଂଶ ଦାବୀ କରୁଅଛନ୍ତି। ଓଡ଼ିଆମାନଙ୍କର ଦାବୀ ସେପରି ନୁହେଁ। ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ମଧ ସେମାନଙ୍କ ମାନ୍ଦ୍ରାଜରେ ପଡ଼ି ରହିବାର ଓ ବିଜାତୀୟ ସଂଶ୍ରବଣ ଯୋଗୁଁ ଆପଣା ଜାତୀୟତା

ନଷ୍ଟ କରିବାକୁ ହେଉଅଛି। ମାନ୍ଦ୍ରାଜ ପ୍ରଦେଶରେ ସେମାନଙ୍କ ସଂଖ୍ୟା କମିଯିବାରୁ ଆନ୍ଧ୍ରମାନେ ମାନ୍ଦ୍ରାଜ ସରକାରଙ୍କ ସାହାଯ୍ୟରେ ସେମାନଙ୍କ ପ୍ରତି ଘୋର ଅତ୍ୟାଚାର ଆରମ୍ଭ କରି ଦେଇଛନ୍ତି। ସେମାନଙ୍କୁ ଆନ୍ଧ୍ର କରିଦେବା ପାଇଁ ସବୁପ୍ରକାର ପ୍ରଯତ୍ନ ଚଳାଇଅଛନ୍ତି। ବିଶାଖାପାଟଣା ଜିଲାରେ ଜୟପୁର ଓ ପାରଳାର କେତେକାଂଶ ଏବଂ ଟିକିଲି, ତରଳା, ମଂଜୁଷା, ବୁଡାରସିଂଙ୍ଗ, ଜଳନ୍ତର ଓ ଇଚ୍ଛାପୁର ପରି ଖାଣ୍ଟି ଓଡ଼ିଆ ଅଞ୍ଚଳ ରହିଥିବା ସ୍ଥଳେ ସେ ଜିଲାର ଭାଷା କେବଳ ତେଲୁଗୁ ବୋଲି ସରକାର ଘୋଷଣା କରି ଦେଇଅଛନ୍ତି। ଓଡ଼ିଆ ସ୍କୁଲ ସବୁ କ୍ରମେ ଉଠିଯାଉଛି। ଦଲିଲ ଦସ୍ତାବେଜ ଓଡ଼ିଆରେ ଲେଖାଗଲେ ରେଜିଷ୍ଟ୍ରି କରାଯାଉନାହିଁ। କୋର୍ଟ କଚେରୀରେ କେବଳ ତେଲୁଗୁ ଭାଷା। ଓଡ଼ିଆମାନେ ବାଧ ହୋଇ ତେଲୁଗୁ ପଢ଼ା ଆରମ୍ଭ କରି ଦେଇଅଛନ୍ତି। ଆଗାମୀ ଜନଗଣନା ସମୟକୁ ଓଡ଼ିଆମାନେ ଆନ୍ଧ୍ରା ବୋଲି ନିଜକୁ ଯେପରି ପରିଚୟ ଦେବେ ସେଥିପାଇଁ ସବୁ ପ୍ରକାର ଉଦ୍ୟମ ହେଉଛି। ଦେଶମିଶ୍ରଣ ଆନ୍ଧ୍ର ଅପେକ୍ଷା ଉତ୍କଳର ଜରୁରି ଆବଶ୍ୟକ।

ମାନ୍ଦ୍ରାଜ ଆନ୍ଧ୍ରଙ୍କ ଭିତରେ ବହୁ ସଂଖ୍ୟକ ଓଡ଼ିଆ ରହୁଥିବା ବେଳେ କେବଳ ସେମାନଙ୍କୁ ଭାଷା ଓ ସ୍ୱାର୍ଥରକ୍ଷା କରା ହୋଇପାରୁନାହିଁ। ଅଥଚ ଓଡ଼ିଶାରେ ଅଳ୍ପ କେତେ ଆନ୍ଧ୍ର ରହି ଓଡ଼ିଶା ବ୍ୟବସ୍ଥା ମଣ୍ଡଳରେ ଆନ୍ଧ୍ର ସଭ୍ୟ ଅଛନ୍ତି। ଓଡ଼ିଆଙ୍କ ସଂଗେ ସମାନ ହୋଇ ଆନ୍ଧ୍ରମାନେ ଚାକିରୀ ପାଉଅଛନ୍ତି। ଆନ୍ଧ୍ରଙ୍କ ପାଇଁ ସ୍ୱତନ୍ତ୍ର ସ୍କୁଲ ସବୁ ରହିଛି ଏବଂ ଓଡ଼ିଆ ସ୍କୁଲମାନଙ୍କରେ ତେଲୁଗୁ ଭାଷା ପଢ଼ା ହେବା ବ୍ୟବସ୍ଥା କରାଯାଇଅଛି। କୋର୍ଟ କଚେରୀରେ ତେଲୁଗୁ ଭାଷା ଅବାଧରେ ଚଳୁଛି। ତେଲୁଗୁ ଦଲିଲ ଦସ୍ତାବିଜ୍ ରେଜେଷ୍ଟ୍ରି କରାଯିବା ପାଇଁ ବାଧା କିଛି ନାହିଁ। ଆନ୍ଧ୍ର ପ୍ରଭାବ ଓଡ଼ିଶାରେ ଏପରି ପ୍ରବଳ ହୋଇଅଛି ଯେ ଆଗାମୀ ଜନଗଣନାରେ ଏ ପ୍ରଦେଶର ଓଡ଼ିଆଙ୍କ ସଂଖ୍ୟା କମାଇ ଆନ୍ଧ୍ରଙ୍କ

ସଂଖ୍ୟା ବଢ଼ାଇବାକୁ ଆନ୍ଧ୍ରମାନେ ଚେଷ୍ଟା କରିବା ପୁଣି ଆଶଙ୍କା ରହିଛି। ଓଡ଼ିଆମାନଙ୍କର ଚେତନା ଥିଲେ ଆନ୍ଧ୍ରମାନେ ମାନ୍ଦ୍ରାଜରେ ଯାହା କରୁଅଛନ୍ତି ଓଡ଼ିଆମାନେ ଓଡ଼ିଶାରେ ତଦପେକ୍ଷ ଅଧିକ କିଛି କରିବାକୁ ପଛଘୁଞ୍ଚା ଦିଅନ୍ତେ ନାହିଁ। ମାନ୍ଦ୍ରାଜ ସରକାର ଭିତରେ ରହି ଏବଂ ଲୋକବୋର୍ଡ଼ମାନଙ୍କୁ ଘେନି ଆନ୍ଧ୍ରମାନେ ସେ ପ୍ରଦେଶରେ ଓଡ଼ିଆଙ୍କ ପ୍ରତି ଯାହା କରୁଅଛନ୍ତି ଓଡ଼ିୟା ସରକାର ତଥା ଗଂଜାମ ଓ କୋରାପୁଟ ଜିଲାବୋର୍ଡ଼ମାନେ ତାହା କଲେ କିଛି ଅନ୍ୟାୟ ହେବନାହିଁ। ଯେସାକୁ ତେଷା ନୀତି ଅବଲମ୍ବନ ନ କଲେ ଏ ଯୁଗରେ କୌଣସି ଜାତିର ଦାବୀ ଅଗ୍ରସର ହୋଇପାରେନାହିଁ।

ସେଦିନ ଉତ୍କଳ ସମ୍ମିଳନୀରେ ଆନ୍ଧ୍ର ଓଡ଼ିଶାର ମନ୍ତ୍ରୀମାନେ ଯୋଗ ଦେଲେ ନାହିଁ ଏବଂ ଯୋଗ ନଦେବା ଉପଯୁକ୍ତ ହୋଇଛି ବୋଲି ଜବାବ କଲେ। ତେଣେ ଆନ୍ଧ୍ର ମହାସଭାରେ ମାନ୍ଦ୍ରାଜର ମନ୍ତ୍ରୀମାନେ ଏବଂ ନିଜେ ବ୍ୟବସ୍ଥା ମଣ୍ଡଳ ସଭାପତି ଯୋଗ ଦେଇଥିଲେ। ଓଡ଼ିଶାର ପ୍ରଧାନମନ୍ତ୍ରୀ କହିଲେ ମାନ୍ଦ୍ରାଜରେ ଓଡ଼ିଆଙ୍କ ଦାବୀ ସେପରି ପ୍ରବଳ ନୁହେଁ। ମାନ୍ଦ୍ରାଜ ମନ୍ତ୍ରୀମାନେ କିନ୍ତୁ ଆନ୍ଧ୍ର ମହାସଭା ନିର୍ଦ୍ଧାରଣ ଦ୍ୱାରା ଦାବୀ କରିଅଛନ୍ତି ଓଡ଼ିଶାରୁ ଇଚ୍ଛାପୁର, ପାରଳାଖେମୁଣ୍ଡି, ବ୍ରହ୍ମପୁର ଗୋପାଳପୁର ଓ ଛତ୍ରପୁର ପ୍ରଭୃତି ମାନ୍ଦ୍ରାଜକୁ ଯିବାକୁ ଦେବା। ଓଡ଼ିଶାର ପ୍ରଧାନମନ୍ତ୍ରୀ ସେଦିନ କହିଲେ ଦେଶମିଶ୍ରଣ ବିଷୟରେ ତାଙ୍କ ଦଳର ବଜେଟ ବକ୍ତୃତାରେ ଲିପିବଦ୍ଧ ହୋଇରହିଛି। ସେ ନୀତିର ମୂଲ୍ୟ କଣ ରହିଲା ଯେବେ ଏ ପର୍ଯ୍ୟନ୍ତ ସେହି ନୀତି ଅନୁସରି କୌଣସି କାର୍ଯ୍ୟ କରାଯାଇନାହିଁ। ଏ ବିଷୟରେ ଆଲୋଚନା ପାଇଁ ଗତ ୧୬ ତାରିଖ ଦିନ କଂଗ୍ରେସ ଦଳ ଗୋଟିଏ କମିଟି ବୈଠକ କଟକକୁ ଡାକିଥିଲେ। ବଡ ଆଶ୍ଚର୍ଯ୍ୟର ସହିତ ଶୁଣିଲୁ ଉକ୍ତ ବୈଠକରେ ଜଗବଂଧୁ ସିଂହ ଓ ସତ୍ୟନାରାୟଣ ରାଜଗୁରୁଙ୍କ ଛଡ଼ା ଅନ୍ୟ କେହି ଉପସ୍ଥିତ ହେଲେ ନାହିଁ। ଦେଶମିଶ୍ରଣ ବିଷୟରେ କଂଗ୍ରେସ ଦଳ କିପରି ଉଦାସୀ ରହିଅଛନ୍ତି ତାହା ଏହି ଘଟଣାରୁ ସ୍ପଷ୍ଟ ଜଣାଯାଉନାହିଁ କି ?"

ଏହି ଦୀର୍ଘ ଆଲୋଚନାରେ ଜୟମଙ୍ଗଳ ଓଡ଼ିଆ ଭାଷୀ ଅଞ୍ଚଳ ମିଶ୍ରଣ ସଂପର୍କରେ ନିର୍ଭୀକ ମତ ଦେଇ ଓଡ଼ିଆ ଜାତୀୟତା ଓ ଅସ୍ମିତାର ନିର୍ମାଣ ଓ ପରିପ୍ରକାଶରେ କିପରି ବିଶେଷ ଭୂମିକା ନେଇଥିଲେ ତାହା ସ୍ପଷ୍ଟ ଜଣାପଡ଼େ । ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବାପରେ ପୂର୍ଣ୍ଣାଙ୍ଗ ଓଡ଼ିଆ ଭାଷୀ ପ୍ରଦେଶ ଗଠନ ପାଇଁ ଜଗବଂଧୁ ସିଂହ, ସତ୍ୟନାରାୟଣ ରାଜଗୁରୁ, ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି, ମହୁରୀ ରାଜା କୃପାସିନ୍ଧୁ ନରେନ୍ଦ୍ର ଦେବ ପ୍ରଭୃତି ବ୍ୟକ୍ତିମାନେ ଯେଉଁ ସ୍ୱର ଉତ୍ତୋଳନ କରିଥିଲେ ସେହି ସ୍ୱରକୁ ଅଧିକ ତୀବ୍ର କରିବାରେ ସଂସ୍କାରକ ଜୟମଙ୍ଗଳ ରଥ ଲାଗିଥିଲେ ।

ଓଡ଼ିଆ ଜାତୀୟ ଆନ୍ଦୋଳନ ପ୍ରସାର ମଧ୍ୟରେ ବ୍ୟସ୍ତରହି ମଧ୍ୟ ଜୟମଙ୍ଗଳ ୧୯୩୯ରେ ମତ୍ସ୍ୟଜୀବୀମାନଙ୍କ ସମସ୍ୟା ପ୍ରତି ଦୃଷ୍ଟି ଦେଇଥିଲେ । ଇଚ୍ଛାପୁରଠାରେ ରଥଙ୍କ ସଭାପତିତ୍ୱରେ ଗଂଜାମ ଓ ବିଶାଖାପାଟଣା ଜିଲା ଓଡ଼ିଆ ମତ୍ସ୍ୟଜୀବୀମାନଙ୍କର ଗୋଟିଏ ସମ୍ମିଳନୀ ୧୯୩୯ ଏପ୍ରିଲ ମାସରେ ହୋଇଥିଲା । (ଦେଶକଥା, ଏପ୍ରିଲ ୨୨, ୧୯୩୯) ଯେଉଁ ତାମ୍ପରାରେ ଶତାବ୍ଦୀ ବ୍ୟାପୀ ମାଛ ଧରି ଏମାନେ ଜୀବିକା ନିର୍ବାହ କରନ୍ତି; ପ୍ରତିବର୍ଷ ନିଲାମରେ ତାହାର ଗୁତ୍ତା ବିକ୍ରି ପ୍ରଥା ବନ୍ଦ କରାଯାଉ ବୋଲି ନିର୍ଦ୍ଧାରଣ କରାଗଲା । ଉଭୟ ମାନ୍ଦ୍ରାଜ ଓ ଓଡ଼ିଶା ସରକାରଙ୍କୁ ଏ ବିଷୟନେଇ ପତ୍ର ଦେବେ ବୋଲି ଜୟମଙ୍ଗଳ ରଥଙ୍କ ଉପରେ ଭାର ଅର୍ପଣ କରାଯାଇଥିଲା । ଇନ୍ଦୁପୁର ମତ୍ସ୍ୟଜୀବୀମାନେ ଏ ବର୍ଷ ନିଲାମରେ ନେଇଥିବାରୁ ନିନ୍ଦା କରାଯାଇ ନିର୍ଦ୍ଧାରଣ ହେଲା ।

॥୫॥

୧୯୪୦ରୁ ୧୯୫୨ ମସିହା ପର୍ଯ୍ୟନ୍ତ ଜୟମଙ୍ଗଳଙ୍କର ସଂସ୍କାରକ ଜୀବନର ଶେଷ ପର୍ଯ୍ୟାୟ । ଏହି ପର୍ଯ୍ୟାୟରେ ତାଙ୍କର ବହୁମୁଖୀ କାର୍ଯ୍ୟକ୍ରମ

ମଧ୍ଯ ପ୍ରଲମ୍ବିତ ଥିଲା। ମହିମା ଧର୍ମ ଓ ତତ୍ତ୍ୱର ସେ ଥିଲେ ଏକ ବିଶିଷ୍ଟ ପ୍ରବକ୍ତା। ତାଙ୍କ ସଂପାଦନାରେ ଧର୍ମ ଓ ସାମାଜିକ ତତ୍ତ୍ୱ ବିଷୟକ "ମହିମା" ନାମକ ଏକ ମାସିକ ପତ୍ରିକା ୧୯୪୦ ଜୁନ୍ ମାସରୁ ପ୍ରକାଶିତ ହୋଇଥିଲା। (ନବୀନ, ୨୫ ଜୁନ୍ ୧୯୪୦) ଏହା ଖଡାସିଙ୍ଗି ଗ୍ରାମ (ବ୍ରହ୍ମପୁରରୁ) ପ୍ରକାଶିତ ହେଉଥିଲା। ୧୯୪୦ ମସିହାରେ ମହିମା ଧର୍ମର ପ୍ରସାର ପାଇଁ ଏହା ବିରୁଦ୍ଧରେ ଥିବା ଅଭିଯୋଗକୁ ଖଣ୍ଡନ କରି ନବୀନ ସମ୍ବାଦପତ୍ରରେ ୨୮ ମେ ୧୯୪୦ରେ ସେ ଲେଖିଥିଲେ- ଜନରବ ହୋଇଅଛି, ଅଲେଖ ବାବାଜୀମାନେ ଜଣେ ଲୋକକୁ ମାରିଦେଇ କୁଆଡ଼େ ପକାଇ ଦେଇଥିଲେ ଏବଂ ବାବାଜୀମାନଙ୍କୁ ପୋଲିସ୍ ଗିରଫ କରୁଅଛି। ଏହିପରି ଏକ ସମ୍ବାଦ ଓଡ଼ିଶାରେ ପ୍ରଚରିତ ହୋଇ କ୍ରମେ ଏହି ଅଞ୍ଚଳକୁ ପ୍ରସାରିତ ହେଉଅଛି। ଯେଉଁମାନେ ଅନନ୍ତ ଆକାଶ ତଳେ ପ୍ରତ୍ୟହ ସୂର୍ଯ୍ୟ ଉଦୟ ଓ ଅସ୍ତ ସମୟ ବ୍ରାହ୍ମ ମୁହୂର୍ତ୍ତରେ ଅନାଦି ଅଲେଖ ପରବ୍ରହ୍ମଙ୍କ ଠାରେ ଶରଣାପନ୍ନ ହୁଅନ୍ତି ଏବଂ କାମିନୀ କାଞ୍ଚନଭୋଗ ବିଳାସ ଲାଳସା ତ୍ୟାଗ କରିବା ଯେଉଁମାନଙ୍କର ନିତ୍ୟସାଧନା, ସେମାନଙ୍କ ନାମରେ ମିଥ୍ୟା ସମ୍ବାଦ ପ୍ରଚରିତ ହେବା ବଡ଼ ଆଶ୍ଚର୍ଯ୍ୟର ବିଷୟ। ମହିମା ଧର୍ମ ଅବଶ୍ୟ ହିନ୍ଦୁ ସମାଜର ବିଭିନ୍ନ କୁସଂସ୍କାର ବିରୁଦ୍ଧରେ ଖଡ଼୍ଗ ଉତ୍ତୋଳନ କରିଅଛି। ଯେଉଁମାନେ କୁସଂସ୍କାର ଭିତରୁ ଉଠିପାରୁନାହାନ୍ତି ସମ୍ଭବତଃ ସେମାନେ ଏହି ମିଥ୍ୟା ଜନରବ ସୃଷ୍ଟି କରିଅଛନ୍ତି।" ମହିମା ତତ୍ତ୍ୱର ଗୁଣାତ୍ମକ ବିକାଶ ପାଇଁ ସେ ସଦା ତତ୍ପର ଥିଲେ। ୧୯ ଫେବୃଆରୀ ୧୯୪୧ରେ ଅଲେଖ ମହିମା ସମାଜ ୧୧୪ତମ ବାର୍ଷିକ ଉତ୍ସବ ଢେଙ୍କାନାଳର ମହାନିତ୍ୟପୁରଠାରେ ହୋଇଥିଲା। ଏହି ସମାଜ ରଥଙ୍କର ମହିମା ପତ୍ରିକା ପ୍ରକାଶ ଭାର ଏହି ଉତ୍ସବରେ ଗ୍ରହଣ କରିଥିଲେ। ଏହାର ୧୧୫ତମ ବାର୍ଷିକ ଉତ୍ସବ ପାଇଁ ସଭାପତି ରୂପେ ବିଶ୍ୱନାଥ ବାବା, ସହକାରୀ

ସଭାପତି ରୂପେ ଦିନବଂଧୁ ବାବା, ଜୟମଙ୍ଗଳ ରଥ କୋଷାଧ୍ୟକ୍ଷ ରୂପେ ନିର୍ବାଚିତ ହୋଇଥିଲେ। (ନବୀନ, ୪ ମାର୍ଚ୍ଚ ୧୯୪୧)

ଏହି ପର୍ଯ୍ୟାୟରେ ଜୟମଙ୍ଗଳ ଅନାଥ ସେବାସଦନ, ଯୁବକ ସଂଘ ପରି ଗଠନାତ୍ମକ ସଂସ୍ଥାମାନଙ୍କରେ ପ୍ରମୁଖ ଭୂମିକା ନେଇଥିଲେ। ୧୯୪୭ ମସିହାରେ ଅନାଥ ସେବାସଦନ କମିଟିରେ ସେ ସଭାପତି ଥିଲେ। ପତିତପାବନ ସଂଘର ଉନ୍ନତି ପାଇଁ ୧୯୨୦ରୁ ୧୯୪୭ ମସିହା ପର୍ଯ୍ୟନ୍ତ ଆପ୍ରାଣ ଉଦ୍ୟମ ଚଳାଇଥିଲେ। ସାଂପ୍ରଦାୟିକ ସଂକୀର୍ଣ୍ଣତା ଭୁଲି ମାନବଜାତି ରୂପେ ଏକ ପରମେଶ୍ୱରଙ୍କ ଉପାସନା କରିବା ସଂଘର ମୁଖ୍ୟ ଉଦ୍ଦେଶ୍ୟ। ସାମାଜିକ କୁସଂସ୍କାର, ଶୋଷଣ, ଅନାଚାର ବିରୁଦ୍ଧରେ ଲଢ଼ି ସେବାଭାବ ଘେନି ଅନୁନ୍ନତ ଜାତିମାନଙ୍କର ଉନ୍ନତି ସାଧନରେ ବ୍ରତୀ ହେବାପାଇଁ ସେ ପତିତପାବନ ସଂଘ ମାଧ୍ୟମରେ ପ୍ରତିବର୍ଷ ଘୋଷଣା କରୁଥିଲେ। ୧୯୪୮ରେ ମତ୍ସ୍ୟଜୀବୀମାନଙ୍କ ସମସ୍ୟା ସଂପର୍କରେ ସେ ସଚେତନ ହୋଇ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ। ସୁନାପୁରଠାରେ ୧୯୪୮ ମେ ମାସରେ ତାଙ୍କ ସଭାପତିତ୍ୱରେ ଗୋଟିଏ ସାଧାରଣ ସଭା ହୋଇ ମତ୍ସ୍ୟଶିଳ୍ପକୁ ମୂଳକରି ମତ୍ସ୍ୟଜୀବୀମାନଙ୍କ ମଧ୍ୟରେ ବାଧ୍ୟତାମୂଳକ ଶିକ୍ଷା ପ୍ରଚଳନ କରିବା, ବାର ଚିଲିକା ମତ୍ସ୍ୟଜୀବୀ ସମବାୟ ୟୁନିୟନ ଗଠନ କରିବା ଏବଂ ସୁନାପୁରରେ ଡାକଘର ସ୍ଥାପନ କରିବା ନିମନ୍ତେ ପ୍ରସ୍ତାବମାନ ଗୃହୀତ ହୋଇଥିଲା। (ନବୀନ, ମେ ୨୫, ୧୯୪୮) ଜୟମଙ୍ଗଳ ଗଞ୍ଜାମ ଜିଲା ମତ୍ସ୍ୟ ସମବାୟ ସମ୍ମିଳନୀର ସେକ୍ରେଟାରୀ ଥିଲେ। ତାଙ୍କ ଦୃଷ୍ଟିରେ ମତ୍ସ୍ୟ ଏକ ଜାତୀୟ ସଂପଦ ଏବଂ ମାଛ ମନୁଷ୍ୟର ଏକ ଉତ୍କୃଷ୍ଟ ଖାଦ୍ୟ। ମାଛରୁ ନାନାବିଧ ତୈଳାଦି ପ୍ରସ୍ତୁତ ହେଉଥିବାରୁ ମତ୍ସ୍ୟ ଶିଳ୍ପର ବିକାଶ ସାଧନ ବିଷୟରେ ଚିନ୍ତା କରିବା ସମସ୍ତଙ୍କର ଗୁରୁତର ଦାୟିତ୍ୱ ବୋଲି ସେ ମତ ପ୍ରକାଶ କରିଥିଲେ। ଏଥି ସକାଶେ ସର୍ବାଦୌ

ମତ୍ସ୍ୟ ଶ୍ରମିକର ଅବସ୍ଥା ଉନ୍ନତି କରାଯିବା ଆବଶ୍ୟକ ବୋଲି ସେ କହିଥିଲେ। ଗଞ୍ଜାମ ଜିଲା ମତ୍ସ୍ୟ ସମବାୟ ସମ୍ମିଳନୀ ସେ ୧୯୫୧ରେ ଡକାଇଥିଲେ। ସେ ନିମନ୍ତେ ଏକ ଶକ୍ତିଶାଳୀ କମିଟି ଗଠନ କରିଥିଲେ। (ନବୀନ, ୩ ଏପ୍ରିଲ ୧୯୫୧)

୧୯୪୪ରୁ ୧୯୪୬ ମସିହା ମଧ୍ୟରେ ଉତ୍କଳ ସମ୍ମିଳନୀର ସଂପାଦକ ନଥାଇ ମଧ୍ୟ ଏହାର କାର୍ଯ୍ୟକ୍ରମ ପ୍ରସାରରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ୧୯୪୪ ମସିହା ସେପ୍ଟେମ୍ବର ୧୦ ତାରିଖରେ ବ୍ରହ୍ମପୁର ଟାଉନ୍ ହଲ୍‌ରେ ସେ ଏକ ସାଧାରଣ ସଭା ଆହ୍ୱାନ କରିଥିଲେ। ରଥ ସେତେବେଳର ପରିସ୍ଥିତିରେ ଉତ୍କଳ ସମ୍ମିଳନୀର ଆବଶ୍ୟକତା ବିଶଦଭାବେ ବାଖ୍ୟା କରିଥିଲେ। ଅକ୍ଟୋବର ମାସ ପ୍ରଥମ ସପ୍ତାହ (୧୯୪୪)ରେ ବ୍ରହ୍ମପୁରରେ ଉତ୍କଳ ସମ୍ମିଳନୀର ଅଧିବେଶନ ହେବାର ସ୍ଥିର ହେଲା। ଜୟମଙ୍ଗଳ ଅଭ୍ୟର୍ଥନା ସମିତିର ସଂପାଦକ ରୂପେ କାର୍ଯ୍ୟ କରିଥିଲେ। (ନବୀନ, ସେପ୍ଟେମ୍ବର ୧୨, ୧୯୪୪) ୧୯୪୬ ମସିହାରେ ଉତ୍କଳ ସମ୍ମିଳନୀର ଏକ ବିଶେଷ ଅଧିବେଶନ ବ୍ରହ୍ମପୁରଠାରେ ହୋଇଥିଲା। ଏଥିରେ ଜୟମଙ୍ଗଳ ଯୋଗଦାନ କରି ସୁଚିନ୍ତିତ ମତ ଦେଇଥିଲେ। ଏହି ସମ୍ମିଳନୀର ୪୩ଶ ଅଧିବେଶନର ଅଭ୍ୟର୍ଥନା ସମିତିର ସଭାପତି ହିସାବରେ ଜୟମଙ୍ଗଳ ଲେଖିଥିଲେ : ଓଡ଼ିଆ ମାତ୍ରେ ଜାଣନ୍ତି ଉତ୍କଳ ସମ୍ମିଳନୀ ଆମ୍ଭମାନଙ୍କ ମହାମିଳନର ପବିତ୍ର ପୀଠ। ବିଶାଳ ବଳିଷ୍ଠ ଉତ୍କଳ ପ୍ରଦେଶ ଗଠନ ଏବଂ ଓଡ଼ିଆ ଜାତିର ସମୂହ ଉନ୍ନତି ସାଧନ ଏହାର ଲକ୍ଷ୍ୟ ହୋଇଥିବା ଯୋଗୁଁ ଜାତିଧର୍ମ ନିର୍ବିଶେଷରେ ସମସ୍ତ ଓଡ଼ିଆଙ୍କର ଏଥିରେ ସମାନ ଅଧିକାର ରହିଛି। ଅଥଚ କୌଣସି ଦଳଗତ ରାଜନୀତି ଚର୍ଚ୍ଚା ପାଇଁ ଏଠାରେ ସ୍ଥାନନାହିଁ। ଦଳଗତ ଭେଦଭାବ ମନରୁ ପୋଛି ଦେଇ ଦୁଇଦିନ ସକାଶେ ଏ ମାତୃ ମଣ୍ଡପରେ

ସମବେତ ହେବା ସକାଶେ ଓଡ଼ିଆ ଭାଇଭଉଣୀଙ୍କୁ ଏତଦ୍ଵାରା ମୁଁ ନିବେଦନ କରୁଛି। ବର୍ଷକରେ ଥରେ ଏ ଦୁଇଦିନର ସମବେତ ମାତୃପୂଜା ପାଇଁ ସମସ୍ତଙ୍କୁ ପ୍ରସ୍ତୁତ ହୋଇ ଆସିବାକୁ ହେବ, ଶକ୍ତି ଅନୁଯାୟୀ ପୂଜାର ଯୋଗ୍ୟ ଉପହାର ନେଇ ଜନନୀ ଜନ୍ମଭୂମିର ସେବା କରିବାକୁ ହେବ। ଆଜି ମୁଁ ବିନୀତ ଭାବେ ଏଥିପାଇଁ ରାଜନୈତିକ ଓଡ଼ିଶା, ଗଡ଼ଜାତ ତଥା ପ୍ରାକୃତିକ ଉତ୍କଳ ଏବଂ ଉତ୍କଳ ବାହାରେ ପ୍ରବାସମାନଙ୍କରେ ରହିଥିବା ଓଡ଼ିଆ ଭାଇଭଉଣୀଙ୍କୁ ସାଦର ଆହ୍ଵାନ କରୁଛି।" (ଡିସେମ୍ବର ୨୪, ୧୯୪୬, ନବୀନ) ଏହିପରି ବିବୃତ୍ତି ମାଧ୍ୟମରେ ସେ ଓଡ଼ିଆମାନଙ୍କର ଜାତୀୟତା ଭାବକୁ ଉଚ୍ଚାରଣ କରି ଉତ୍କଳ ସମ୍ମିଳନୀକୁ ଲକ୍ଷ୍ୟ ହାସଲ ପଥରେ ଆଗେଇ ଯିବାକୁ ପ୍ରଲୁବ୍ଧ କରିଥିଲେ।

ଜୀବନର ଦୀର୍ଘ ୩୮ ବର୍ଷ କାଳ ସମାଜ ସଂସ୍କାର ଓ ସଂଗଠନରେ ଲିପ୍ତ ରହି ଜୟମଙ୍ଗଳ ରଥ ୧୯୫୨ ଜୁନ୍ ୨୦ ତାରିଖ ଦିନ ହଠାତ୍ ରାତ୍ର ଦୁଇଟାରେ ରଥଯାତ୍ରା ଦିବସରେ ହୃତ୍‌ପିଣ୍ଡ କ୍ରିୟା ବନ୍ଦ ହୋଇ ଯିବାରୁ ପରଲୋକ ଗମନ କରିଥିଲେ। ମୃତ୍ୟୁବେଳକୁ ତାଙ୍କର ବୟସ ୬୦ ହୋଇଥିଲା ବୋଲି ନବୀନ, ୧ ଜୁଲାଇ ୧୯୫୨ ସଂଖ୍ୟାରେ ପ୍ରକାଶିତ। ମୃତ୍ୟୁବେଳକୁ ସେ ଖୁବ୍ ସୁସ୍ଥ ଓ ସବଳ ଥିଲେ। ଜୀବନର ଶେଷ ସମୟ ଯାଏ ସେ ହରିଜନ ପଡ଼ାରେ ବାସ କରୁଥିଲେ। ଦଳିତମାନଙ୍କର ସେ ଜଣେ ପରମ ବନ୍ଧୁ ଥିଲେ। ସେ ଦଳିତ ଜାତିର ଅଗ୍ରଗତି ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ।

***